# ବାରକଥା

(ଲମ୍ବା, କ୍ଷୁଦ୍ର ଓ ଅଣୁ ଗଳ୍ପ ସଂକଳନ)



ପ୍ରଥମ ସଂସ୍କରଣ: ୨୦୨୩

ପ୍ରକାଶକ: କୁନୁ ବହି, ୫ ଏ/ ବ୍ଲକ୍ -୮,  ଡ୍ରିମ ପାଲ୍ଲଜୋ ଆପାର୍ଟମେଣ୍ଟ

ନାରାୟଣପୁର, କୋଲକାତା- ୭୦୦୧୩୬

ପ୍ରଚ୍ଛଦ ଛବି: ସୁପ୍ରିୟା

ଲେଖକ ଫଟୋ: ତ୍ରିବେଣୀ

ଅଲଙ୍କରଣ ଓ ଅକ୍ଷରସଜ୍ଜା: ବି ଶଙ୍କର ରାଓ

---

**BARAKATHA**

(A collection of long, short and flash stories)



First Published in 2023 by Kunu Bahi & Printed in India

Kunu Bahi, 5A, Block 8, Dream Palazo Apartment

Narayanapur, Kolkata - 700136

Cover photo: Supriya

Author’s photo: Triveni

Design and Page setting: B. Shankar Rao

**ISBN 978-93-6013-561-4**

ଏଇ ବହିଟି କିଣି ପଢ଼ିଥିବା ଦୁର୍ଲ୍ଲଭ ପାଠକମାନଙ୍କୁ

# ସୂଚୀପତ୍ର

# ଜନହିତରେ ଜାରି

ବହି ଭିତରେ ଯେତେବେଳେ ନିଶାଖୋରମାନଙ୍କୁ ଭେଟିବେ ମନେ ରଖିବେ: ମଦ୍ୟପାନ ଏବଂ ଧୂମ୍ରପାନ ସ୍ୱାସ୍ଥ୍ୟପକ୍ଷରେ କ୍ଷତିକାରକ । (ସରକାର ନିଶାଦ୍ରବ୍ୟ ବିକ୍ରି କରନ୍ତି କାହିଁକି? ପୁଣି ତା ଉପରେ ଏମିତି ଚିହ୍ନ ଓ ଚେତାବନୀ ଛାପନ୍ତି କାହିଁକି? କହିବା ବାହୁଲ୍ୟ, ସବୁ ସମୟରେ ନୈତିକ ଦାୟିତ୍ୱ ସଂପୂର୍ଣ୍ଣ ଭାବେ ନିଜର ।)

ଏହି ବହିର ଗପ ଗୁଡ଼ିକରେ ସମସ୍ତ ଘଟଣା ଚରିତ୍ର ସଂପୂର୍ଣ୍ଣ କାଳ୍ପନିକ, ଅଥଚ ବାସ୍ତବତା ଦ୍ୱାରା ପ୍ରଭାବିତ । କୌଣସି ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷଙ୍କ ସହ ଏହାର ସାମଞ୍ଜସ୍ୟ ଆକସ୍ମିକ, ଉଦ୍ଦେଶ୍ୟହୀନ । ଅଥବା ଏହା ମଧ୍ୟ ସମ୍ଭବ ଏହି ଲେଖକର କଳ୍ପନାରୁ କିଛି ଚରିତ୍ର ବା ଘଟଣାକୁ ବିଧି ସଂସାରରେ ଖଞ୍ଜି ଦେଇଥାଇପାରେ, ଘଟଣା ତା ବାଟରେ ଘଟି ଥାଇପାରେ । ଗପ ଗୁଡ଼ିକ ପଢ଼ି ଯଦି କେହି ପାଠକ ଆନନ୍ଦିତ, ଦୁଃଖିତ, ବିସ୍ମିତ, ବିରକ୍ତ, ବିବ୍ରତ, ଉତ୍ତ୍ୟକ୍ତ, କ୍ରୋଧିତ, ଉଲ୍ଲସିତ, ପୁଲକିତ, କିଂକର୍ତ୍ତବ୍ୟବିମୂଢ଼ ଅବା ଆତ୍ମହରା ହେଲେ — ସେଥିପାଇଁ ଏହି ଲେଖକ ଆଦୌ ଦାୟୀ ନୁହେଁ । ପଦ୍ମପତ୍ରରେ ପାଣି ଗଡ଼ିଯିବା ଭଳି କାହାଣୀ ଗୁଡିକ ଯଦି ପାଠକ ମାନସରେ କୌଣସି ପ୍ରଭାବ ନ ପକାଏ, ସେଥିପାଇଁ ମଧ୍ୟ ଏହି ଲେଖକ ଦାୟୀ ନୁହେଁ । ନିଜର ପ୍ରତିକ୍ରିୟା ପୂର୍ଣ୍ଣମାତ୍ରାରେ ନିଜର ମାନସିକ, ବୌଦ୍ଧିକ ତଥା ନୈତିକ ଉତ୍ତରଣ ଉପରେ ନିର୍ଭର କରେ । ମଣିଷ ନିଜର ପ୍ରତ୍ୟେକ ଅନୁଭବ ଓ ପ୍ରତିକ୍ରିୟା ପାଇଁ ନିଜ ନିକଟରେ ହିଁ ଉତ୍ତରଦାୟୀ ।



# ସ୍ୱର୍ଗସୁଖ

ସ୍ୱରିଆଡ଼େ ଚହଳ ପଡ଼ିଗଲା — ସହର ଉପକଣ୍ଠରେ ଗାଁ ଷଠିପୁର, ସେଠି ଯୋଉ ବାବା ଆବିର୍ଭୂତ ହେଇଛନ୍ତି, ସେ ଏମିତି ମନ୍ତ୍ର ଜାଣନ୍ତି, ଯାହା ବଳରେ ମଣିଷ ମଲା ପରେ ନିଜ ଧନ ସମ୍ପତ୍ତି ସାଙ୍ଗରେ ନେଇ ସ୍ୱର୍ଗରେ ବିଳାସ କରିପାରିବ; ଅପସରାଙ୍କ ସଙ୍ଗେ ନୃତ୍ୟ, ଗୀତ ଓ ମଦିରା ପାନ, ରାଜ୍ଜି ଭୋଜନ ତଥା ପୁଷ୍ପକ ବିମାନରେ ଆକାଶ ଭ୍ରମଣ ଇତ୍ୟାଦି ମଧ୍ୟ ଉପଭୋଗ କରିପାରିବ ।

ବାବାଙ୍କର ଚେଲା ଓ ଚେଲି ମିଶି ପାଞ୍ଚ — ଦୁଇ ଚେଲା, ତିନି ଚେଲି; ବୟସ ତିରିଶ ଭିତରେ । ସେମାନଙ୍କ ମୁହଁରେ ବାବାଙ୍କର ଅଷ୍ଟପ୍ରହରୀ ଚରିତାମୃତ — ବାବା ଏମିତି ସେମିତି ବାବା ନୁହଁନ୍ତି । ସେ ତ୍ରିକାଳଦର୍ଶୀ, ଭୂତ ଭବିଷ୍ୟତ ତାଙ୍କ ନଖଦର୍ପଣରେ । ତାଙ୍କୁ ଯେତେବେଳେ ସାଢ଼େ ବାର ବର୍ଷ ହେଇଥିଲା, ଆଦ୍ୟ କିଶୋରରେ ଦେହ ମନ ପୁଲକିତ ହେଉଥିଲା, ଶ୍ରାବଣର ଏକ ଉଦ୍ଦୀପିତ ରାତିରେ ସ୍ୱୟଂ ମହାଦେବ ତାଙ୍କୁ ହିମାଳୟକୁ ଯାଇ ସାଧନା କରିବାକୁ ସ୍ୱପ୍ନାଦେଶ ଦେଇଥିଲେ । ତା ପରଦିନ ସକାଳୁ ସେ ଗାଁ ନଈରେ ବୁଡ଼ଟେ ମାରି ଚାଲି ଚାଲି ଯାଇ ଛକରେ ବସ୍ ଧରିବା ଆଗରୁ ଗାଁର ଲେଖାପୋଖା କକେଇ, ଯିଏ ସଡ଼କ ତଳେ ଗୋଟେ ଔଷଧ ଦୋକାନ ଦେଇଥିଲେ, ତାଙ୍କୁ ସବୁ କଥା ବଖାଣି, ଘରେ ଜଣେଇ ଦେବାକୁ କହି, କକେଇ "ରହ ରହ, ଶୁଣ୍ ଶୁଣ୍" କହୁ କହୁ ଗୋଟେ ଟାଟା ବସ୍ ଧରି ପକେଇଲେ । ଏମିତିରେ ବାବାଙ୍କର ଭାଇ ଭଉଣୀ ମିଶେଇ ଏଗାର । ବାପାବୋଉ, ଭାଇଭଉଣୀମାନେ ଯେ ବେଶି ଦୁଃଖ କରିବେନି ବାବା ସେକଥା ମନକୁ ବୁଝେଇ ଦେଲେ । ଏମିତିରେ ତ ପାଠ ହଉ ନଥିଲା, ତାକୁ ବାପା କହୁଥିଲେ ସାଙ୍ଗରେ ଯାଇ ହଳ ପକେଇବାକୁ । କିନ୍ତୁ ତାଙ୍କ କପାଳରେ ତ ଆଧାତ୍ମିକ ଉପଲବ୍ଧି ଲେଖା । ଘରୁ ବାହାରି ତାଙ୍କର ଏକମାତ୍ର ଲକ୍ଷ୍ୟ କେମିତି ହିମାଳୟରେ ପହଞ୍ଚିବେ । ନିଜ ଭିତରେ ଅଦ୍ଭୁତ ଆଲୋଡ଼ନ ଅନୁଭବ କଲେ

ସାଢ଼େ ବାର ବର୍ଷର କିଶୋର । ନିଜ ଗାଁରୁ ଟାଟାରେ ପହଞ୍ଚି କୁଆଡ଼େ ଯିବେ କିଛି ସ୍ଥିର କରି ନ ପାରି ଗୋଟେ ଜଳଖିଆ ଦୋକାନରେ ବୋଲହାକ କରି କିଛିଦିନ ରହିଲେ । ସେଠୁ ଦିନେ ଗୟା ଟ୍ରେନରେ ଉଠିଲେ । ଗୟାବୁଡ଼ ପକେଇ ଟ୍ରେନ ଧରିଲେ ସିଧା ହିମାଚଳ ଋଷିକେଶ । ସେଇଠୁ ଆରମ୍ଭ ହେଲା ପଦଯାତ୍ରା । ହିମାଳୟର କେଉଁ ଗୁମ୍ଫାରେ ସେ ବାରବର୍ଷ ବାରଦିନ ତପସ୍ୟା କରି ମହାଦେବଙ୍କ କୃପାରୁ ଅସାଧାରଣ ଶକ୍ତି ପ୍ରାପ୍ତ ହେଲେ । ସେହି ଶକ୍ତି ବଳରେ ସେ ଉତ୍ତରରେ ଅନେକ ଚମତ୍କାର କରିବା ପରେ ନିଜ ଜନ୍ମମାଟିର ଟାଣରେ ଦିନେ ଆସି ପୁରୀ ଜଗନ୍ନାଥ ପୀଠରେ ପହଞ୍ଚିଲେ । ବାବାଙ୍କ ଭାଷାରେ ମଣିଷ ଦେବତା ହେଲେ ବି ଜନ୍ମମାଟିର ଋଣ ଶୁଝିପାରେ ନାହିଁ । ସେଇ ମାଟି, ପାଣି, ପବନ — ସେଇଠି ତ କଟେ ନିରିମାଖୀ  ଶୈଶବ!

ବାସ୍, ଷଠିପୁର ଗାଁ ଯାହା ରାଜଧାନୀ ଭୁବନେଶ୍ୱର ଓ ପୁରୀ ମଝିଆମଝି — ସେଠି ଗୋଟେ ପର୍ଣ୍ଣକୁଟୀରରେ ବାବା ବର୍ତ୍ତମାନ ବିରାଜମାନ । ତାଙ୍କର ଚେଲା ଓ ଚେଲି ପଞ୍ଚ ମହାରଥୀ ପ୍ରାୟ ଜନସଂପର୍କ ଓ ପ୍ରଚାରର ବ୍ୟବସ୍ଥାରେ ଅହୋର୍ନିଶି ମନପ୍ରାଣ ଦେଇ ଲାଗିଗଲେ ।

ଭୀମା ସାହୁ କାନରେ ବାବା ମାହାତ୍ମ୍ୟ ପଡ଼ିଲା ଗାଁ ମନ୍ଦିର ମଙ୍ଗଳବାରିଆ ପୂଜାବେଳେ । ପ୍ରତି ମଙ୍ଗଳବାର ସେ ରକ୍ତମନ୍ଦାର ଫୁଲମାଳ ଠାକୁରାଣୀଙ୍କୁ ପିନ୍ଧାଇ ମଙ୍ଗଳା ବିମଳା ସ୍ତୋତ୍ର ବୋଲିବା ପରେ ଯାଇ ଜଳ ସ୍ପର୍ଶ କରେ । ସେଦିନ ସ୍ତୋତ୍ର ପାଠ କଲାବେଳେ ତାର ଧ୍ୟାନ ବାରମ୍ବାର ବ୍ୟାହତ ହେଲା । ମନ୍ଦିର ପ୍ରାଙ୍ଗଣ ଭିତରେ ତିନି ଚାରିଜଣ ଝିଅ ବୋହୂ ବାବାଙ୍କର ଗୁଣଗାରିମା, ଚମତ୍କାରିତା ଭରି ଆଗ୍ରହରେ ଗପୁଥିଲେ ।

"ହ୍ୟାତ୍, ଯେ ମାଇପିଙ୍କର କିଛି କାମ ନଥାଏ । ଯୋଉଠି ଏକାଠି ହେଲେ ଖାଲି ବଜର ବଜର ।" ହେଲେ ତାର ମନଟା ଯେମିତି ଶ୍ରବଣଇନ୍ଦ୍ରିୟକୁ ଟାଣକାଇଲା, ସେଇ ଆଡ଼େ ହିଁ ଭୀମା କାନ ଯେମିତି ଲମ୍ବିଗଲା — "ନିଜ ସାଙ୍ଗରେ ଧନ ସମ୍ପତ୍ତି ନେଇ ପାରିବ!"

"ମରିବା ପରେ!"

"ହଁ, ପା!"

ଭୀମା ସାହୁର ପୂଜାରେ ମନ ଆଉ କୋଉ ଲାଗନ୍ତା? ଏମିତିରେ ଭୀମା ସାହୁର କୃପଣ ହିସାବରେ ନାଁ ଡ଼ାକ । ତା ପଛରେ ଲୋକେ କଥା ହୁଅନ୍ତି — "ତା ମୁହଁ ଯିଏ ସକାଳୁ ଦେଖେ, ତାକୁ ସେଦିନ ଖାଇବା ମିଳେନି । ଆଉ ଯଦି

ଗ୍ରତିରେ ଶୋଇବା ଆଗରୁ ଦେଖେ, ନିଦରେ ଝେଙ୍କରେ ହାଉଳି ଗୁଉଳି ହବା ଥାଏ ।" ବାଙ୍ଗରା, ପେଟୁଆ, କଳା — ଭୀମାକୁ ଅନ୍ଧାରରେ ଦେଖିଲେ ଯେ କେହି ହାଉଳି ପକେଇବ । ଗାଁ ଟୋକାଏ ତାକୁ କୁବେର ବୋଲି ମୁହଁରେ ଟେକନ୍ତି ଓ ପଛରେ ଗେଠାଙ୍କର ଗେଠା କହି ଚୁଗୁଲି କରନ୍ତି । ବୁଢ଼ା ରେଳଗାଡ଼ିରେ ବର୍ଷରେ ଥରେ କୁଆଡ଼େ ଯାଇ ବୁଲି ଆସେ — ତିରୁପତି ବାଲାଜୀ, ସୋମନାଥ ମନ୍ଦିର, କଲିକତା କାଳୀ । ହେଲେ ଗ୍ରାମଦେବୀଙ୍କ ମେଳାରେ ବୁଢ଼ା ଟଙ୍କା ତ ବାହାର କରିବନି, ଦୁନିଆ କଥା ଶୁଣେଇବ । ଦେଇ ଦେଇ ଦବ ତା ଦୋକାନରୁ ପୁରୁଣା ଖୁଦ ଗୁଉଳ, କଞ୍ଚା କଦଳୀ, ପୋକରା ବାଡ଼ି ବାଇଗଣ ।

ବୁଢ଼ାର ବୁଢ଼ୀ କୋଉ କାଳୁ ଛବି । ଏବେ ତା ସହ ରହେ ତାର ଏକମାତ୍ର ପୁଅ ନରେନ୍ଦ୍ର, ବୋହୂ ସୁଷମା । ଛଅ ସାତ ବର୍ଷ ତଳେ ପୁଅକୁ ବାହା ଦେଇଥିଲା, ନାତିଟେ ପାଇଁ ମଙ୍ଗଳାଙ୍କ ପାଖରେ ମାନସିକ କରି ଅଧିଆ ପଡ଼ି ପଡ଼ି ତିନି ବର୍ଷ ତଳେ ନାତିଟେ ଘରକୁ ଆସିଲା । ଭୀମା ସାହୁର ବନ୍ଧୁବାନ୍ଧବ ବା ଗାଁ ସାଇପଡ଼ିଶା କାହା ସାଙ୍ଗେ ସେମିତି ଭାବଦୋସ୍ତ ନାହିଁ । ଭାବଦୋସ୍ତ ମାନେ କଅଣ କି ଆଉ ପଇସା ଖର୍ଚ୍ଚ! ବୁଢ଼ା ଯେ କଥା ପୁଅ ନରିଆକୁ ବହୁ ସମୟରେ ତା ସାଙ୍ଗମାନଙ୍କ ସାମ୍ନାରେ ବୁଝେଇ ଦେଇଥିଲା । ନରିଆ ବାପା ମୁହଁରେ କେବେ କିଛି କୁହେନି, ନିଜ ବାପା ଗୁଣ ଜାଣି କାହା ସହ ବେଶି ମିଳାମିଶା କରେନି । ଭୀମା ତିନି ଝିଅଙ୍କୁ ବିଭାଦେବା ପରେ କେବେ ସେମାନଙ୍କୁ ଖୋଜାଲୋଡ଼ା କରେନି । ସେମାନେ ଆସିକି ଦିଦିନ ରହିଲେ, ବୁଢ଼ା ଡ଼ାକିକି କହିବ, "ମାଆ, ତୁମ ଘରେ ସେଠି ସମସ୍ତେ ହଇରାଣ ହେଉଥିବେ । ତୁମ ବୋଉ ବିଭାଘର ପରେ ଅଷ୍ଟମଙ୍ଗଳାରେ ଯାଇ ଫେରିଲେ ଯେ ପୁଣି ତୁମ ଆଇଙ୍କର ଦଶତୁଠକୁ ଗଲେ, ସତର ବର୍ଷ ପରେ । ସେମିତି ଘର କଲେ ସ୍ୱୟଂ ଲକ୍ଷ୍ମୀ ଠାକୁରାଣୀ ବୈକୁଣ୍ଠ ଛାଡ଼ି ଘରେ ବିରାଜିବେ ।" ଏମିତି ଶୁଣିବା ପରେ କୋଉ ଝିଅ ବାପଘରକୁ ମନ ବଳେଇବ ?

ନିଜର ଧନ କେମିତି ବଢ଼ିବ, ଜମା ଖାତାରେ ସୁଧ କେମିତି ବଢ଼ିବ — ଏହା ହିଁ ଭୀମା ସାହୁ ଜୀବନର ଏକମାତ୍ର ଲକ୍ଷ୍ୟ । ଭୀମା କାନରେ ବାବାମାହାତ୍ମ୍ୟ ପଡିଲାରୁ ସେ କେମିତି ଗୋଟେ ଭୟମିଶା ଉତ୍କଣ୍ଠା ଅନୁଭବ କଲା । ଅତି ଅଦ୍ଭୁତ ଭାବନା ଗୁଡ଼ିଏ ତା ମନରେ ଉଙ୍କି ମାରି ଉଭେଇ ଗଲେ, ତା ଫଳରେ ତାର ହୃତ୍‌ସ୍ପନ୍ଦନ ବଢ଼ିଗଲା; ଏମିତି ସେ ଅନୁଭବ କରେ ରାତିରେ ଦୋକାନରୁ ଟଙ୍କା ନେଇ ଘର ସିନ୍ଧୁକରେ ରଖିବା ବେଳେ, ଫିକ୍ସଡ୍ ଡିପୋଜିଟ ଟଙ୍କା ଦିଗୁଣା ହେଇ ମିଳିବା ସମୟରେ ।

ଭୀମା ସାହୁ ପରିବାର ବୋଲେ ଗ୍ରରି ପ୍ରାଣୀ । ଭୀମା ଖାଇବା ଆଗରୁ

ଆଉ କେହି ଘରେ ଭାତ ଖାଇ ବସିଲେ ଭୀମାର ଦେହ ସହେନା । ତେଣୁ ନରିଆ ବି ଦୋକାନ କାମ ସାରି ଗଡ଼ିଆରେ ବୁଡ଼ଟେ ପକେଇ ଆସି ଅପେକ୍ଷା କରି ରହେ କେତେବେଳେ ବାପା ମନ୍ଦିରରୁ ପୂଜା ସାରି ଆସିବେ । ନାତି ଟୋକାକୁ ଆଗରୁ ବୋହୂ ସୁଷମା ଦି ଗୁଣ୍ଡା ଗଳା ଭାତ ଖୁଆଇ ଦେଇଥାଏ । ବୋହୂ ଉପରେ ଦୁନିଆଯାକ ଦାୟିତ୍ୱ; ସକାଳ ପାଇଟି କରି ଗାଈ କାମ ସାରିବା ବେଳକୁ ଆଠଟା ବାଜିଯାଏ । ଘରେ ଗାଈଦୁହାଁଳ ସମୟରେ କ୍ଷୀର ଗୃହା ନ ହେଲେ ନାଲି ଗୃହା ସାଙ୍ଗରେ ମୁଢ଼ି ତାଟିଏ ପାଟିରେ ପକେଇ ଭୀମା ଦୋକାନ ଯାଏ । କାଳେ କୋଉ ଗରାଖ ଆସି ଫେରିଯିବ, ସକାଳୁ ନରିଆକୁ ପଠେଇଥାଏ । ବୁଢ଼ାର ସନ୍ଦେହ ପୁଅ ସକାଳୁ ବଇନି କରି କିଛି ରେକଡ଼ ପକେଟ କରେ । କିନ୍ତୁ ତା ବେଶି ନୁହେଁ, ବୁଢ଼ା ଜାଣେ, ଦୋକାନରେ ଏତେ ସକାଳୁ ଭିଡ଼ ହୁଏନା । ଧର, କାହାର ଅଫିସ କଚେରି ଯିବାର ଅଛି, ତା ଘରେ ସକାଳୁ କାମ । ତାଙ୍କ ଗାଁରେ ଏମିତି ପାଠ ପଢୁଆ, ଅଫିସିଆ ଗଣ୍ଡାଏ ହେବେ । କଥା ହେଲା, ଦିନେ ସକାଳୁ ତା ଦେହ ଭଲ ଲାଗୁ ନଥିଲା, ପୁଅକୁ ଦୋକାନ ଖୋଲି ପଠେଇଲା । ସେଦିନ ଦେଖିଲା ଭାରି ଭଲ ବେପାର ହେଇଛି । ସେଦିନଠୁଁ ସେ ଭାବିଲା ପୁଅ ହାତରେ ବଇନି କଲେ ଫାଇଦା ବେଶି ।

ସେଦିନ ଅପରାହ୍ନରେ ଯିଏ ତା ଦୋକାନକୁ ଆସିଲେ, ତା ମୁହଁରେ ବାବାଙ୍କ କଥା । ସତେ ଚମତ୍କାରୀ ବାବା!  ସଂକ୍ଷେପରେ, ବାବାଙ୍କର ଆବିର୍ଭାବ ଗାଁବାଲାଙ୍କ ମନରେ ଚରମ ଆଗ୍ରହ ଓ ଉଦ୍ଦୀପନା ସୃଷ୍ଟି କରିଥାଏ । ଦିନେ କାଳେ ଯୋଉ କଥା କାନ ଶୁଣି ନଥିଲା, ଯାହା କେବେ ସମ୍ଭବ ନୁହେଁ ବୋଲି ମଣିଷ ଭାବୁଥିଲା, ଯଦି ତାହା ସମ୍ଭବ ହେଇପାରିବ, ତାଠୁଁ ବଡ଼ ଆଶ୍ଚର୍ଯ୍ୟ କଥା ଆଉ କଅଣ ଥାଇପାରେ? ପ୍ରତିଥର କିଏ ନା କିଏ ପହଞ୍ଚୁଥାଏ ଆଉ ଅଭିନବ ଚମତ୍କାରୀ କଥା ସବୁ ଯୋଡୁଥାଏ ।

"ଶୁଣିଲଣି ନା? ଏବେ ଆଉ କେହି କହିବେନି, ମଲା ବେଳକୁ କଅଣ ଧନ ଗଣ୍ଠିରେ ବାନ୍ଧିକି ନେବୁ? ମନବୋଧ ଚଉତିଶା ଆଉ ଚଳିବନି, ବୁଝିଲ?" ଜଣେ ଗରାଖ କହିଲା ।

"ଗଲେଣି ତୋ ସଙ୍ଗରେ ଯେ ଯେତେ ଜନ, ଗଣ୍ଠିରେ ବାନ୍ଧିନେଲେ ପୁଳିଏ ଧନ, ରେ ବାଇମନ । ଏଥରଠୁଁ କଥା ଅଲଗା । ନୂଆ ଯୁଗ ଆସିଲା, ନୂଆ ଯୁଗ ।" ଗାଁ ମନ୍ଦିର ପୂଜାରୀ ହସି ହସି ବ୍ୟଙ୍ଗ କଲେ ।

"ଆରେ ଯା," ପାଠପଢୁଆ ବିମଳ ବାବୁ, ଆମ ଏଜି ଅଫିସରେ ହାକିମ, କହିଲେ — "ଆଜିକାଲି ଭଣ୍ଡ ବାବାଜୀ କଅଣ କମ୍ ଅଛନ୍ତି?"

"ଆଜ୍ଞା, ମୋତେ ଟିକେ ବୁଝେଇବେ କି, ଯଦି ମଣିଷ ଚନ୍ଦ୍ରକୁ ଯାଇପାରୁଛି, ଅନ୍ତରୀକ୍ଷକୁ କେତେ କଅଣ ପଠାଇ ପାରୁଛି, ସ୍ୱର୍ଗକୁ ସମ୍ପତ୍ତି କାହିଁକି ନେଇପାରିବନି? ବାବାଙ୍କର ଚେଲା, ଯିଏ ପତଳା ଓ ଚ୍ଚିପଣ୍ଡ କଳା, ଶୂନ୍ୟରୁ ଆସି ପ୍ରତ୍ୟୁତ୍ତର ଦେଲା ।

"କୋଉ କଥାକୁ କାହା ସହ ଯୋଡୁଛ ବା?" ବିମଳ ବାବୁ ଏଭଳି ଯୁକ୍ତି ଶୁଣି କଅଣ କହିବେ କିଛି ଠିକ୍ କରିପାରିଲେନି ।

"ସେଇ ଏକା କଥା ଆଜ୍ଞା । ସମ୍ଭବରେ ଭାଇ, ସବୁ ସମ୍ଭବ । ପ୍ରଭୁଙ୍କର ମାୟା, ଆମର କଳନା କରିବାର ସାଧ କାହିଁ?"

ଭୀମା ସାହୁ ଜିନିଷ ଦଉଥାଏ, ଶୁଣୁଥାଏ, ଆଉ ମୁଣ୍ଡ ହଲଉଥାଏ । ତା ମନର ନିକିତି ଖାଲି ଉପର ତଳ ହଉଥାଏ — କଅଣ ସମ୍ଭବ, କଅଣ ସମ୍ଭବ ନୁହେଁ?

"ବାବା ଆଗରୁ ଏମିତିକା ଚମତ୍କାର ଆଉ କୋଉଠି ସମ୍ଭବ କରେଇଛନ୍ତି?" କୌତୂହଳୀ ହୋଇ ଜଣେ ସମ୍ଭ୍ରମତାର ସହ ପଚାରିଲା ।

"ଉତ୍ତରରେ ସେ ଯେ କଥା କରେଇଛନ୍ତି । ଆପଣେ ଯଦି କେବେ ଋଷିକେଶ ତୀର୍ଥରେ ଯିବେ, ସେଠୁ ଗଙ୍ଗାନଦୀ ଉପରମୁଣ୍ଡକୁ ଉଠିଲେ ବାମ ପଟେ ଗୁଳ୍ମଲତା ଘେରା ଦିବ୍ୟସୁନ୍ଦର ଆଶ୍ରମଟିଏ ପଡ଼ିବ । ସେଇ ପବିତ୍ର ଆଶ୍ରମ ପ୍ରାଙ୍ଗଣରେ ବାବା ଅନେକ ଚମତ୍କାର ସାଧିଛନ୍ତି । ଯଉଠି ନାହିଁ ସେଠି କଅଣ ଚମତ୍କାର ସମ୍ଭବ? ଏପରି ଅସମ୍ଭବ ମନେ ହେଉଥିବା କଥା କେବଳ ପୁଣ୍ୟମାଟିରେ, ବିରଳ ପବିତ୍ର ତିଥିରେ ସମ୍ଭବ ହୁଏ । ବାବା ଧ୍ୟାନରେ ପ୍ରତ୍ୟକ୍ଷ କରିଛନ୍ତି, ଯେ ଗାଁ ମାଟି ପବିତ୍ର, ଏଠିକାର ବାସିନ୍ଦା ଧର୍ମାଶ୍ରିତ, ସେମାନଙ୍କର ଅଶେଷ ସୁକର୍ମ ।"

"ହଁ, ଆଜ୍ଞା, ଆମେ ଧର୍ମକୁ ଆଶ୍ରା କରି ତ ଚାଲିଛୁ । ନ ହେଲେ ଆମ କଥା କିଏ ବୁଝୁଛି? ଆମେ ମଲୁ କେତେ ରହିଲୁ କେତେ ସରକାରଙ୍କର କି ଯାଏ ଆସେ?" ଉପସ୍ଥିତ ଗାଁଲୋକେ ବ୍ୟକ୍ତ କଲେ ।

ଏମିତି ଚର୍ଚ୍ଚା ଲାଗି ରହିଥିବା ବେଳେ ଦିନେ ଶୁଣାଗଲା ବାବା ଆସନ୍ତା ଚିତାଲାଗି ଅମାବାସ୍ୟା ଦିନ ଗୋଟେ ଯଜ୍ଞ କରିବେ । ଏଥର ଅମାବାସ୍ୟାରେ ଯେଉଁ ଷଡ଼ମହାଗ୍ରହକୁଟ ଯୋଗ ପଡୁଛି, ସେଇ ଯୋଗରେ ମଣିଷର ସର୍ବମନୋବାଞ୍ଛା ପୂରଣ ହୁଏ । ଯଜ୍ଞ ଆଗରୁ ବାବାଙ୍କ ପ୍ରଚାରକ ଦଳ ଆସି ସମସ୍ତଙ୍କୁ ସାଦର ନିମନ୍ତ୍ରଣ, ବାରମ୍ବାର ଅନୁରୋଧ କରିଗଲେ । ଘରଘର ବୁଲି ଗାଁ ସ୍ତ୍ରୀଲୋକଙ୍କୁ ଯଜ୍ଞର ମହତ୍ତ୍ୱ ବୁଝେଇ ପୁଅଝିଅ ସ୍ୱାମୀ ତଥା ପରିବାରର ଉନ୍ନତି ପାଇଁ ସେଦିନ ବ୍ରତ

ଉପବାସ ରଖିବାକୁ ଅନୁରୋଧ କଲେ । ବାବା ଗାଁଲୋକଙ୍କ ଉତ୍ତରୋତ୍ତର ଉନ୍ନତି ପାଇଁ ଯେ ଯଜ୍ଞ କରୁଛନ୍ତି । ଗାଁ କ୍ଷେତରେ ସୁନେଲି ଫସଲ ଫଳିବ, ପୋଖରୀରେ ରୁପେଲି ମୀନ ଖେଳିବେ, ବାଡ଼ିରେ ଛନଛନିଆ ସବୁଜ କଖାରୁଡ଼ଙ୍କ ଲଟେଇବ, ପିଲେ ବେମାର ପଡ଼ିବେନି — ଯଜ୍ଞରେ ବ୍ରତୀ ହେଇ ହୋମ ଓ ଦାନ କଲେ ଅଶେଷ ପୁଣ୍ୟ ଅର୍ଜନ ହେବ, ମଣିଷ ମଲା ପରେ ବି ନିଜର ସମ୍ପତ୍ତି ନେଇ ଭୋଗ କରିବ — ବାବାଙ୍କ ଅଲୌକିକ ଆଧାତ୍ମିକ ଶକ୍ତି ବଳରେ ଏସବୁ ସମ୍ଭବ ହେବ ।

ଯଜ୍ଞକଥା ପ୍ରଚ୍ଚାର ପରେ ଗାଁରେ କେମିତି ଗୋଟେ ଶିହରଣ ଖେଳିଗଲା । ସମସ୍ତଙ୍କ ମୁହଁରେ ଗୋଟେ କଥା । ଆଉ ସେଇ ଗରମାଗରମ ଚର୍ଚ୍ଚାରେ ଘିଅ ଢାଳିବାକୁ ବାବାଙ୍କ ଚେଲାଚେଲି ସର୍ବଦା ତତ୍ପର ।

"ସତେ ଯେ ସବୁ ସମ୍ଭବ ହେବ ?"

"ଏଥିରେ ଅସମ୍ଭବ କଅଣ ଅଛି ଯେ ? ମଣିଷ ଆଜି ଚନ୍ଦ୍ରକୁ ନାନା ଜିନିଷ ନେଇ ଯାଇପାରୁଛି, ସ୍ୱର୍ଗକୁ କାହିଁକି ଧନ ନେଇପାରିବନି ? ଆମ ଝିଅ କଳ୍ପନା ଚାୱ୍ଲା — ସ୍ୱଦେହରେ ସେ ପୁଣି ସ୍ୱର୍ଗକୁ ଗଲାଟି !"

ଏକଥା ମଧ୍ୟ ପ୍ରଚ୍ଚାର ହେଲା, ଯେଉଁମାନେ ମୃତ୍ୟୁ ପରେ ନିଜର ଧନ ସମ୍ପତ୍ତି ନେବାକୁ ଚାହୁଁଛନ୍ତି, ସେମାନଙ୍କୁ ବାବାଙ୍କ ସହ ବିଶେଷ ସାକ୍ଷାତ ପରାମର୍ଶ କରିବାକୁ ପଡ଼ିବ । ସେଥିପାଇଁ ଏକ ନିର୍ଦ୍ଦିଷ୍ଟ ଦିନ ଓ ସମୟ ମଧ୍ୟ ଧାର୍ଯ୍ୟ କରାଗଲା ।

ଚେଲାଚେଲିଙ୍କ ଯୁକ୍ତି ହେଉ ବା ନିଜର ଅହେତୁକ କୌତୂହଳ ହେଉ, ଗାଁ ଲୋକେ ଯଜ୍ଞଦିନକୁ ଉତ୍କଣ୍ଠାରେ ଅପେକ୍ଷା କରି ରହିଲେ । ଦଳେ ବିଶ୍ୱାସ କଲେ, କଣ ମାନସିକ ରଖିବେ ଭାବିହେଲେ, କେତେ ସାଙ୍ଗରେ ନେବେ କେତେ ପିଲାଝିଲାଙ୍କ ପାଇଁ ରଖିଯିବେ ସେ କଥା ବିଚ୍ଚାରିଲେ । ଆଉ ଦଳେ ଅବିଶ୍ୱାସୀ, ସନ୍ଦେହୀ କଅଣ କେମିତି ହେବ ସେକଥା ଦେଖିବା ଅପେକ୍ଷାରେ ରହିଲେ । ସେଇ କେତେଟା ଦିନ ଭୀମା ସାହୁ ବେଶ୍ ଗମ୍ଭୀର ଜଣାପଡ଼ିଲା ।

ବାବାଙ୍କ ପର୍ଣ୍ଣକୁଟୀର । ତୋଟା ପଡ଼ିଆକୁ ସଫା କରି ବାଡ଼ ଘେରା ହେଇଛି । ଯଜ୍ଞ ଦୁଇଦିନ ଆଗରୁ ଯେଉଁ ବିଶେଷ ସାକ୍ଷାତ ସ୍ଥିର ହେଲା, ଦେଖାଗଲା ଭୀମା ସାହୁକୁ ମିଶେଇ ଗାଁର ନଅ ଜଣ ବାବାଙ୍କୁ ଏକାନ୍ତରେ ଭେଟିବାକୁ ଗଲେ । ନବଗ୍ରହ ତୁଲ୍ୟ ସେମାନଙ୍କର ରୂପ, ଗୁଣ, କର୍ମ ଭିନ୍ନ ଓ ସ୍ୱତନ୍ତ୍ର ।

ବାବାଙ୍କ କୋଠରି ଦୁଇଟି ଘିଅ ଦୀପର କ୍ଷୀଣ ଆଲେକରେ ଆଲୋକିତ । ଗୋଟେ କୋଣରୁ ଅଗରବତୀ ଧୂପ ଓ ଚନ୍ଦନର ସୁଗନ୍ଧ ଝୁଣା ଧୂଆଁ ସହ ମିଶି

କୋଠରି ମଧ୍ୟରେ ଭକ୍ତିପ୍ଳୁତ ପରିବେଶ ସୃଷ୍ଟି କରିଥାଏ । ବାବାଙ୍କ ଦେହରେ ହାଲୁକା ଗେରୁଆ ଧୋତି ଓ କାନ୍ଧରେ ମଠା ଗୃଦର । ଯତ୍ନରେ ବଢ଼ା ହେଇଥିବା ଝୁଲନ୍ତ କଳାଧଳା ଦାଢ଼ି । କପାଳରେ ରକ୍ତଚନ୍ଦନର ତୃତୀୟ ନେତ୍ର ଅଙ୍କା ହେଇଛି, ସତେ ଦେବଗୁରୁ ବୃହସ୍ପତି!

ସବା ଆଗେ ଯାହାକୁ ଜଣେ ଚେଲା ଭିତରୁକୁ କଢ଼େଇ ନେଲା, ସେ ହେଉଛନ୍ତି ଚୌଧୁରୀ ହରିଶ୍ଚନ୍ଦ୍ର ମହାନ୍ତି, ତାଙ୍କ ବୟସ ପାଖାପାଖି ପଗୃଶ । ରକ୍ତଗୃପ, ମଧୁମେହ ଓ ହୃଦରୋଗରେ ପୀଡ଼ିତ । ତାଙ୍କର ବାପାଙ୍କ ଜେଜେଙ୍କ କକେଇପୁଅ ଭାଇର ଜାଗିର ଥିଲା; ସେଇ ସୂତ୍ରରେ ଗୃରିପୁରୁଷ ପରେ ବି ସେ ଅଗାଧ ଜମିବାଡ଼ିର ମାଲିକ । ଧୀରେ ଆସି ବାବାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ପାଖରେ ପଡ଼ିଥିବା ଆସନରେ ବସିଲେ ।

କିଛି କ୍ଷଣ ନୀରବରେ ବିତିଗଲା । ନୀରବତା ଭଙ୍ଗ କରି ନରମ ଗମ୍ଭୀର କଣ୍ଠରେ ବାବା ପଗୃରିଲେ, "ମନ କଥା ଖୋଲି କହିବାରେ ବିଳମ୍ବ କାହିଁକି ?"

"ବାବା, ମୁଁ ଆଜିକୁ ପ୍ରାୟ ପାଞ୍ଚବର୍ଷ ଧରି ଉଚ୍ଚ ରକ୍ତଗୃପ, ମଧୁମେହ ଭୋଗୁଛି । ଗତ ବର୍ଷ ଷ୍ଟ୍ରୋକ୍ ହେଇଥିଲା, ମରୁ ମରୁ ବଞ୍ଚିଲି ।" ଏ କଥା କହୁ କହୁ ହରିଶ୍ଚନ୍ଦ୍ର ବାବୁ କାନ୍ଦ କାନ୍ଦ ହେଇଗଲେ ।

ବାବାଙ୍କ ଚକ୍ଷୁଯୁଗଳ ସ୍ଥିର, ସେ ହରିଶ୍ଚନ୍ଦ୍ର ବାବୁଙ୍କ କଥାକୁ ମନ ଦେଇ ଶୁଣୁଥାନ୍ତି ।

"ମୋର ଗୋଟେ ବୋଲି ପୁଅ ଶ୍ରୀକାନ୍ତ, ଦୁଃସଙ୍ଗରେ ପଡ଼ି ଗୃରିପାଞ୍ଚିରୁ ଗଲାଣି ।"

"ଯାହା ପ୍ରଭୁଙ୍କର ଇଚ୍ଛା । ଏସବୁ ପୂର୍ବଜନ୍ମର କର୍ମଫଳ ।" ବାବା ଉଦାର କଣ୍ଠରେ କହିଲେ ।

"ବହୁତ ଅଶାନ୍ତିରେ ମୋ ଜୀବନଟା ଗଲା । ମରିବା ପରେ ଯଦି ଟିକେ ଶାନ୍ତିରେ ରହିପାରନ୍ତି..."

"ଅବଶ୍ୟ । କିନ୍ତୁ ଦାନ ଧର୍ମ ବିନା ତା କଅଣ ସମ୍ଭବ? ଆପଣ ତ ଜାଣିବା ଲୋକ, ଆମର ଶାସ୍ତ୍ରରେ କୁହାଯାଇଛି — ଗ୍ରହେ ଦେୟାନି ଦାନାନି ଗ୍ରହେ ଦେୟାଚ ଦକ୍ଷିଣା । ଗ୍ରହବିପ୍ରାୟ ଦାତବ୍ୟଂ ତାନ୍ୟଥା ନିଷ୍ଫଳଂ ଭବେତ୍ । ଅର୍ଥାତ୍, ଗ୍ରହମାନଙ୍କ ପ୍ରିତ୍ୟର୍ଥେ ଦେୟ ଦାନଦ୍ରବ୍ୟ ଓ ଦକ୍ଷିଣା ଗ୍ରହବିପ୍ର ଯଜ୍ଞାଧୀଶମାନଙ୍କୁ ଦେବା ଉଚିତ୍ । ତା ନହେଲେ ତାହା ନିଷ୍ଫଳ ହେବ ।"

"ମୁଁ ଭାବୁଥିଲି ଯଦି ନଈକୂଳିଆ ଯୋଉ ଗ୍ଚରି ମାଣ ଜମି ଅଛି... ?"

"ହଁ, ହଁ, ଏଥିରେ କୌଣସି ଅସୁବିଧା ହେବନି । ଯଜ୍ଞ ସନ୍ଧ୍ୟାରେ ମୁଁ ଯେଉଁ ବିଶେଷ ପୂଜାର୍ଚ୍ଚନା କରିବି, ତାର ପୁଣ୍ୟ ଫଳରେ ଆପଣ ସେ ସମ୍ପତ୍ତି ଦେବଲୋକରେ ଭୋଗ କରିପାରିବେ ।"

ତାଙ୍କ ପାଟିରୁ "ବାବାଆଆଆ" ବାହାରିଲା ଓ ସେ ବାବାଙ୍କ ଗୋଡ଼ ତଳେ ଲମ୍ବ ହେଇ ପଡ଼ିଗଲେ ।

"ମୋ ପୁରୁଣା ମାରୁତିଟା ଯଦି ନେଇପାରନ୍ତି... ?"

"ମାରୁତି ଗାଡ଼ି ନବାରେ କିଛି ଅସୁବିଧା ନାହିଁ ଯେ ହେଲେ..." ବାବା ଟିକେ ଚିନ୍ତା କଲେ ।

"ହେଲେ କଅଣ ବାବା ?"

"ସେଠି ଖରାପ ହେଲେ ଭାରି ଅଡୁଆ; ସ୍ପେଆର ପାର୍ଟ୍ ମିଳିବା କଷ୍ଟ ।"

"ଆଜ୍ଞା ।" ମହାନ୍ତି ବାବୁ ମୁହଁ ଶୁଖେଇଲେ, "ହଉ, ଛାଡ଼ । କୁଳାଙ୍ଗାରଟା ଚଢୁ ।"

"ଯାହା ମୋ ଶିଷ୍ୟମାନେ କହିବେ ସେ ଅନୁସାରେ ଦାନଦକ୍ଷିଣା ଦେଇ ଯଜ୍ଞ ଦିନ ନିର୍ଜଳା ଉପବାସ ରଖିବେ ।" ଏହା କହି ବାବା ତାଙ୍କୁ ପ୍ରସ୍ଥାନ କରିବାକୁ ଅନୁମତି ଦେଲେ ।

ବାବାଙ୍କ ଚେଲାମାନେ ସାକ୍ଷାତ ସମୟ ସମସ୍ତଙ୍କ ପାଇଁ ଅଲଗା ସ୍ଥିର କରିଥିଲେ ଯେମିତି କେହି କାହାର ମୁହାଁମୁହିଁ ହେବେ ନାହିଁ ।

ଉଷାମଞ୍ଜରୀ ଦେବୀଙ୍କର ତିନି ପୁଅ, ତିନିହେଁ ଉଚ୍ଚପଦସ୍ଥ । ସ୍ୱାମୀ ଥିଲାବାଲା କାଠ ବ୍ୟବସାୟୀ, ଏବେ ବୟସାଧିକ୍ୟରୁ ବେପାର କାମ ବୁଝିବାକୁ ଲୋକ ରଖିଛନ୍ତି । ତିନି ପୁଅଙ୍କ ବିଭାଦେବା ଅନ୍ତେ ସ୍ୱାମୀ ସ୍ତ୍ରୀ ଦୁହେଁ ବର୍ଷରେ ଛଅ ମାସ ବାହାରେ ପୁଅ ବୋହୂଙ୍କ ପାଖରେ କଟାନ୍ତି । ଉଷାଦେବୀ ଅଷ୍ଟଅଳଙ୍କାର ଭୂଷିତା । ହଳଦି ରଙ୍ଗର ପଶାପଲି ଶାଢ଼ୀଟିଏ ପିନ୍ଧିଥାନ୍ତି, ସଲଜ୍ଜ ଓଢ଼ଣା ମୁଣ୍ଡରେ ଟାଣିଥାନ୍ତି । ସେ ବାବାଙ୍କୁ ପ୍ରଣାମ କରି ଯଥା ସ୍ଥାନରେ ବସିଲେ ।

"ମୋ ତିନି ପୁଅ ଗୋଟେ ଗୋଟେ ସୁନାମୁଣ୍ଡା । ଶିକ୍ଷାଦୀକ୍ଷା କୋଉଥିରେ ଊଣା ନୁହଁନ୍ତି । ମାଆକୁ ନ ପଗ୍ଚରି କିଛି କରନ୍ତିନି ।"

"ଭାଗ୍ୟବତୀ ତୁମେ ମାଆ ।"

"ନା, ହୀନକପାଳୀ ମୁଁ । ସେ ତିନିଟା ଯାକ ବୋହୂ କେହି କାହାକୁ କମ୍ ନୁହଁନ୍ତି । କି ମନ୍ତ୍ର ମୋ ପୁଅଙ୍କ କାନରେ ଫୁଙ୍କିଲେ, ସେମାନେ ଆଉ ମୋତେ ପଚ୍ଚାରୁନାହାନ୍ତି ।"

"ସବୁ ମାୟା ମାଆ, ସବୁ ମାୟା ।"

"ଭାବିଥିଲି ଯିଏ ମୋ କଥା ବୁଝିବ, ମୋର ସେବା ଯତ୍ନ କରିବ, ତାକୁ ମୋ ସୁନାଗହଣା ସବୁ ଦେବି । କିନ୍ତୁ ବୋହୂମାନଙ୍କଠୁଁ ମୋ ମନ ଛାଡ଼ିଯାଇଛି । ମୁଁ ଯେତେବେଳେ ଶୁଣିଲି ଆପଣଙ୍କ ଅସାଧସାଧନ ଶକ୍ତି କଥା, ସାଙ୍ଗେ ସାଙ୍ଗେ ଠିକ୍ କଲି, ନାଁ ଏମାନଙ୍କ ପାଇଁ ଯାହା କରିଛି ଢ଼େର୍ କରିଛି । ଆଉ କିଛି କରିବାର ନାହିଁ । ଯେ ତିନିଟାଙ୍କୁ ସୁନାଗହଣା ଦୂରେ ଥାଉ, ଦେହର ମଳି ଟିକେ ବି ଦେବିନି ।"

"ଅତି ଉତ୍ତମ ଚିନ୍ତା, ମାଆ ।" ବାବା ଉଷାମଞ୍ଜରୀ ଦେବୀଙ୍କ କଥାକୁ ସମର୍ଥନ କଲେ ।

ନିଜର ପ୍ରାୟ ତିରିଶ ଭରି ସୁନାଗହଣାକୁ ସେ କେମିତି ସ୍ୱର୍ଗକୁ ନେବେ, ସେଥିପାଇଁ ତାଙ୍କୁ କଅଣ ଦାନ ଧର୍ମ କରିବାକୁ ପଡ଼ିବ ଏକଥା ପୁଙ୍ଖାନୁପୁଙ୍ଖ ବିଚ୍ଚାର କରି ଉଷାଦେବୀ ପ୍ରତିଶୋଧ ନେଇପାରିବାର ଏକ ଉଗ୍ର ଉଲ୍ଲାସ ନେଇ ଘରୁକୁ ଫେରିଲେ ।

ରମେଶ ଚନ୍ଦ୍ର ମହାପାତ୍ର — ସାମ୍ବାଦିକ । ଅନେକ ଗୁଡ଼ିଏ ଖବରକାଗଜକୁ ଆଞ୍ଚଳିକ ଖବର ଦେବା ତାଙ୍କର ବୃତ୍ତି । ତା ବାଦ୍ ବିଭିନ୍ନ ପତ୍ରପତ୍ରିକାକୁ ଗପ କବିତା ମଧ ପଠାନ୍ତି । ବଖୁରିଆ ଘରେ ଓଡ଼ିଆ ତଥା ଇଂରଜୀ ବହି ଦୁଇ ତିନିଟା ଆଲମିରାରେ ଖୁନ୍ଦା ହେଇରହିଛି । ସେ ଯେଉଁ ଦିନରୁ ଲେଖାଲେଖି କରୁଛନ୍ତି, ସେବେଠୁଁ ତାଙ୍କର ଯେତେ ଲେଖା ବାହାରିଛି, ସେହି ଅଂଶକୁ କାଟି ରଖିବା ହେଉଛି ତାଙ୍କର ଅଭ୍ୟାସ । ଏମିତି କାଗଜ ଟୁକୁରା ଫାଇଲ ଦଶ ବାର ଗଦାରୁ ବେଶି । ସ୍ତ୍ରୀ ନୟାଗଡ଼ରେ ଗୋଟେ ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ପାଠ ପଢ଼ାନ୍ତି, ତାଙ୍କ ପାଖରେ ପୁଅ ଦିଟା ବି ରୁହନ୍ତି । କେବେ ପୂଜାଛୁଟି କି ଖରାଛୁଟିରେ ସେମାନେ ବୁଲି ଆସିଲେ ରମେଶ ବାବୁ ତାଗିଦ କରିଥାନ୍ତି ଯେମିତି ତାଙ୍କ କାଗଜପତ୍ରରେ କାହା ହାତ ନ ବାଜେ ।

ବାବାଙ୍କୁ ସବିନୟ ନମସ୍କାର ଜଣାଇ ସେ ଠିଆ ହେଇ ରହିଲେ । ବାବା ତାଙ୍କୁ ଆସନ ଗ୍ରହଣ କରିବାକୁ ଅନୁରୋଧ କଲାରୁ ସେ ବିନମ୍ରତାର ସହ କହିଲେ — "ମୁଁ ଆଜି ଟିକେ ତରବରିଆରେ ଅଛି, ଗୋଟେ ଖବର ଅଧଘଣ୍ଟା ଭିତରେ

ଲେଖିକି ନ ପଠେଇଲେ କାଲି ବାହାରି ପାରିବନି । ମୋର ଖାଲି ଗୋଟେ ଚିନ୍ତା — ଯଦି ମୋ କାଗଜପତ୍ର, ମୋ ଦୁର୍ମୂଲ୍ୟ ବହି ମୁଁ ସାଙ୍ଗରେ ନେଇ ଇହଧାମ ତ୍ୟାଗ କରିପାରନ୍ତି... ?"

"ବାବୁ, ଯେ ତ ଅତି ମହତ କାମନା ।"

ରମେଶ ବାବୁ ଆଶ୍ୱସ୍ତିର ଗୋଟେ ଲମ୍ବା ନିଶ୍ୱାସ ମାରିଲେ ।

"ବାବା, ମୁଁ ଆପଣଙ୍କର ଯଜ୍ଞ କଥା ଖବରକାଗଜକୁ ଲେଖିକି ଦେବି କି ?"

"ନା, ବାବୁ, ପ୍ରଚ୍ଚରରେ ମୁଁ ବିଶ୍ୱାସ କରେନି । ତୁମେ ହୁଏତ ପରତେ ଯିବନି ବହୁ ବଡ଼ ବଡ଼ ଅନ୍ତର୍ଜାତୀୟ ଖବର ସଂସ୍ଥାର ମାଲିକ ମୋର ଅନୁଗତ । ସେମାନେ ମୋତେ ପ୍ରଚ୍ଚର କଥା କୁହନ୍ତି, ମୋର ସିଦ୍ଧିର ପ୍ରଚ୍ଚର କରିବାକୁ ସେମାନଙ୍କର ପ୍ରବଳ ଇଚ୍ଛା । ହେଲେ ମୁଁ ସେସବୁଠୁଁ ନିଜକୁ ଦୂରରେ ରଖିଆସିଛି । ନିଜର ପ୍ରଚ୍ଚର ମୋର ଲକ୍ଷ୍ୟ ନୁହେଁ, ମୋର ଲକ୍ଷ୍ୟ ଈଶ୍ୱରସେବା ଓ ଜନସେବା ।"

ରମେଶ ବାବୁ ତରବରିଆ ନମସ୍କାରଟେ ପକେଇ ବାହାରିଗଲେ ।

କିଛି ସମୟ ପରେ ଜଣେ ସୌମ୍ୟଦର୍ଶୀ ଯୁବକ, ବୟସ ଚ୍ଚଳିଶ ପାଖାପାଖି ହେବ, ବାବାଙ୍କ କୋଠରିରେ ପ୍ରବେଶ କଲେ । ରାଜୀବ ଦାସ କୋଉ ଗୋଟେ ପ୍ରଯୁକ୍ତି ବିଦ୍ୟା କମ୍ପାନୀରେ ଚ୍ଚକିରି କରେ । ବେଶ ପୋଷାକ ସଦାବେଳେ ଇସ୍ତ୍ରୀକରା, ଦାମୀ ଅତରର ସ୍ନିଗ୍ଧ ବାସ୍ନା ପାଖରୁ ବାରିହୁଏ ।

ସେ ବାବାଙ୍କ ପାଦ ଛୁଇଁ ଆଣ୍ଠେଇ ବସି କହିଲେ, "ବାବା, ମୋର ଧନ ସମ୍ପତ୍ତି ଟଙ୍କା ସୁନା କିଛିରେ ଲୋଭ ନାହିଁ । ମୋର ଏସବୁ କିଛି ଲୋଡ଼ା ନାହିଁ ।"

"ଏହା ଖୁବ୍ ଭଲ କଥା ।" ବାବା ଗମ୍ଭୀର ହୋଇ କହିଲେ ।

"ମୁଁ ଗୋଟେ କଥା ଭାବୁଥିଲି, ଆପଣ କାଳେ କ୍ରୋଧିତ ହେବେ..."

"କ୍ରୋଧ ମୋର ବଶୀଭୂତ; ଭୟ ନ କରି କୁହ ।"

"ମୁଁ ଭାବୁଥିଲି ଯଦି କେଇ ବୋତଲ ଜାପାନି ତେଲ ନେଇପାରନ୍ତି..."

"ଅବଶ୍ୟ!" କରୁଣାମୟ ବାବା କହିଲେ ।

"ଆଉ କିଛି ଅଶ୍ୱଗନ୍ଧା ବଟିକା... ?"

"ହଉ ତେବେ, ତୁମର ଯଦି ସେଥିରେ ମନ ।"

ରାଜୀବ ବାବୁ କୃତକୃତ୍ୟ ହେଇ ବାହାରିଗଲେ ।

ତାପରେ ଆସିଲେ ଶ୍ୟାମବନ୍ଧୁ ମିଶ୍ର । ଗୀତ ଗାଇବା ତାଙ୍କର ନିଶା ଓ ପେଶା । ତାଙ୍କୁ ଦିଆଯାଇଥିବା ସମୟର ବହୁ ପୂର୍ବରୁ ଆସି ହାଜର ହେବା ଫଳରେ ସେ ଆଉ ରାଜୀବ ଦାସ ମୁହାଁମୁହିଁ ହେଇଗଲେ । ଦିହେଁ ଦିହିଁଙ୍କୁ ଦେଖି ଟିକେ ଅପ୍ରସ୍ତୁତ ହେଇ ନିଜ ନିଜ ବାଟରେ ଗଲେ । ଶ୍ୟାମବନ୍ଧୁ ବାବୁଙ୍କୁ ସମସ୍ତେ ଶ୍ୟାମ ଭାଇ ଡ଼ାକନ୍ତି । ସେ ସଂଗୀତ ଛଡ଼ା ଆଉ କିଛି ବୁଝନ୍ତି ବୋଲି ମନେ ହୁଏନି । ଶ୍ରାବଣ ରାତି ହେଉ ବା ବସନ୍ତର ମଧ୍ୟାହ୍ନ, ତାଙ୍କ ସୁର ଅବିରତ ମୃଦଙ୍ଗର ତାଳେ ତାଳେ ଚାଲିଥାଏ । ସଂଗୀତ ହିଁ ତାଙ୍କର ସାଥି, ସଂଗୀତ ହିଁ ପ୍ରେୟସୀ । ସକାଳେ ସନ୍ଧ୍ୟାରେ ଲୋକେ ଦେଖନ୍ତି, ସେ ତାଙ୍କ ହାର୍ମୋନିଅମ ଆଉ ମୃଦଙ୍ଗକୁ ଏମିତି ଆଉଁସୁ ଥିବେ ସତେକି ସେ ଦୁଇଟି ନିର୍ଜୀବ ବସ୍ତୁ ନୁହେଁ, ବରଂ ଯୋଡ଼ିଏ ଗୁଲୁଗୁଲିଆ କଅଁଳା ଛୁଆ ।

କୋଠରିରେ ପଶୁ ପଶୁ ସେ କହି ଉଠିଲେ — "ସେ ଦିଟାଙ୍କୁ ମୁଁ କାହାପାଖରେ ଛାଡ଼ି ମରିବି, ବାବା ? ମୁଁ ଶାନ୍ତିରେ ମରିପାରିବିନି ।"

"ମୁଁ ତ ଛାଡ଼ିଯିବା କଥା କହୁନାହିଁ ।" ବାବା ନରମ ଗଳାରେ ଉତ୍ତର ଦେଲେ ।

"ସେଥିପାଇଁ ତ ଆପଣଙ୍କ ପାଖକୁ କେତେ ଆଶା ନେଇ ଦଉଡ଼ି ଆସିଛି । ମୋ ମୃଦଙ୍ଗ ଓ ହାର୍ମୋନିଅମ ଛାଡ଼ି ମୁଁ ମୁହୂର୍ତ୍ତେ ରହିପାରିବିନି ।" ଏହା କହୁ କହୁ ଶ୍ୟାମବନ୍ଧୁ ବାବୁ କାନ୍ଦି ପକେଇଲେ ।

"ଶାନ୍ତ ହୁଅ । ତୁମ ମୃଦଙ୍ଗ ଓ ହାର୍ମୋନିଅମ ସ୍ୱର୍ଗରେ ତୁମ ପାଖରେ ସ୍ଥାନ ପାଇବେ ।"

"କେବଳ ଆପଣ ହିଁ ଭରସା, ଆପଣ ହିଁ ଅଗତିର ଗତି ।" ଏହା କହି ଶ୍ୟାମବନ୍ଧୁ ମିଶ୍ର ପ୍ରସ୍ଥାନ ଗ୍ରହଣ କଲେ ।

ସକାଳ ବେଳାଟି ଏ ପ୍ରକାରେ କଟିଗଲା । ବାବା ଚେଲାଚେଲିଙ୍କୁ ଡାକି କିଏ କଅଣ ଦାନ କରିବ, ଦାନର ସମୟ, ଯଜ୍ଞ ବ୍ୟବସ୍ଥା ଆଦି କଥା ଆଲୋଚନା କଲେ । ଆଲୋଚନା ହୁଏତ ଆହୁରି ଚାଲିଥାନ୍ତା, କିନ୍ତୁ ଧୀରେନ୍ଦ୍ର ନାୟକ ବାହାରୁ ଡ଼ାକ ଛାଡ଼ିଲେ । ଭଦ୍ରବ୍ୟକ୍ତିଙ୍କର ଏକ ବିଶେଷ ରୁଚି ଥିଲା । ଯୁଆଡ଼ୁ ଯେତେ ଡ଼ାକଟିକଟ, ଦିଆସିଲି ଖୋଳ, ସିଗାରେଟ ଖୋଳ ପାଇବେ ଆଣି ସାଇତି ରଖିବେ । ଯିଏ ଯାହା ଫୋପାଡ଼ି ଦେବ ତାକୁ ଆଣି ଘରେ ଆଣ୍ଟିକ୍ ପିସ୍ ଭଳି ସଜେଇବେ । ବାବାଙ୍କୁ ନମସ୍କାରଟେ ପକେଇ ସେ କହିଲେ, "ମୋ ଅନ୍ତେ ମୋ ଜିନିଷକୁ କିଏ ଯତ୍ନ କରିବ ? ଏଥିପାଇଁ ତ ପରିବାର ଲୋକେ ଅଶାନ୍ତି, ସବୁବେଳେ

ମୋ ଉପରେ ଗରଗର । କଅଣ କିଛି କରି ଯଦି ମୁଁ ଏସବୁ ମୋ ସାଙ୍ଗରେ ନେଇ ଯାଇପାରନ୍ତି, ଆପଣ ଯଦି ଏଇ ଟିକକ ଉପକାର କରନ୍ତେ ।"

ବାବା କହିଲେ, "ଏହା ମୋର ପରମ କର୍ତ୍ତବ୍ୟ । ଆପଣଙ୍କ ଜିନିଷ ସୁରକ୍ଷିତ ଭାବେ ଆପଣ ପାଇବେ ।"

ସନ୍ଧ୍ୟାବେଳେ ଦିନବନ୍ଧୁ ପୂଜାପଣ୍ଡା ବାବାଙ୍କ ପାଖରେ ପହଞ୍ଚିଲା ବେଳକୁ ଆରତି ସମୟ । ବାବା ଧ୍ୟାନରେ ବସି ଶ୍ଳୋକ ପରେ ଶ୍ଳୋକ ଆବୃତ୍ତି କରିବାରେ ଲାଗିଲେ ।

"ମୁଖେ ଚିଙ୍କଂ କରେ ବେଦାଃ ପାଦ ଯୁଗ୍ମେ ଦ୍ୱୟମ୍
କ୍ରୋଡେ ବାଣ ସ୍ତଥାବେଦାଃ କରେ ସବ୍ୟେଚରେପି ଚ ।

ଦ୍ୱୟଂ ଦ୍ୱୟଂ ତଥା ନେତ୍ରେ ମସ୍ତକେ ତ୍ରିତୟଂ ତଥା ।
ଦ୍ୱୟଂ ଚୈବ ତଥା ନେତ୍ରେ ମସ୍ତକେ ତ୍ରିତୟମ୍ ତଥା ।

ଫଳଂ ମୁଖେ ଦୁଃଖଂ କରେ ଲାଭଂ ପାଦୋଦ୍ୱୟଂ ଭ୍ରମଣଂ
ହୃଦି କାନ୍ତା ସ୍ୟାଦବନ୍ଧନଂ ବାମେ କିଞ୍ଚିତଲାଭଶ୍ଚଦକ୍ଷିଣେ ।

ସମ୍ମାନଂ ନେତ୍ରୟୋଶ୍ଚୈଇବ ଅପମାନଶ୍ଚ ମସ୍ତକେ
ଗୁହ୍ୟେଚୈବଂ ଭବେନମୃତ୍ୟୁ ଷଡଶୀତିଫଳଂ ଶୃତି ।"

ପୂଜାପଣ୍ଡା ବାବୁ ଦିନେ କାଳେ ମନ୍ଦିର ଦୁଆର ମାଡ଼ନ୍ତିନି । ଦେଶୀ କୁକୁଡ଼ା ମାଂସ ନ ହେଲେ ତାଙ୍କ ତଣ୍ଟିରେ ଭାତ ଗଳେନି ।

ଆରତି ପରେ ବାବାଙ୍କୁ ଜୁହାର ହେଇ କହିଲେ — "କୁକୁଡ଼ା ବିନା ମୁଁ ଦଣ୍ଡେ ଚଳିପାରିବିନି । ତଜନେ ମାଇ ଅଣ୍ଡିରା ମିଶେଇ ନେଇ ପାରିଲେ ମୋର ଆଉ କିଛି ପରବାୟ ନାହିଁ ।"

"କିନ୍ତୁ ତୁମକୁ ଯଜ୍ଞର ଆଗଦିନରୁ ଆମିଷ ଖାଦ୍ୟ ବର୍ଜନ କରିବାକୁ ପଡ଼ିବ । ଯଜ୍ଞଦିନ ସଂପୂର୍ଣ୍ଣ ପାକତ୍ୟାଗ ।"

"ଦୁଇଦିନ ବିନା କୁକୁଡ଼ାରେ ମୁଁ ଉହଳବିକଳ ହେବି ।"

"ବାବୁ, କିଛି ପାଇବାକୁ ହେଲେ କିଛି ତ୍ୟାଗ କରିବାକୁ ପଡ଼ିଥାଏ ।"

"ଆପଣ ଯାହା ଆଦେଶ ଦେବେ ମୁଁ କରିବି । କାଲିଠୁଁ ଯଜ୍ଞ ଶେଷ ହେବା ଯାଏ ମୁଁ କୁକୁଡ଼ା କଥା ମନରେ ସୁଦ୍ଧା ଆଣିବି ନାହିଁ ।"

ସାଧୁଃ ସାଧୁଃ କହି ବାବା ତାଙ୍କୁ ଯିବାକୁ ଅନୁମତି ଦେଲେ ।

ନବେ ବର୍ଷୀୟା ବୃଦ୍ଧା ତିଳୋତ୍ତମା ଦେବୀ । ବଙ୍କୁଲି ବାଡ଼ି ଠକର ଠକର କରି ସେ ବାବାଙ୍କ ପାଖରେ ପହଞ୍ଚିଲେ । ପୂଜାପାଠରେ କେତେ ବେଳେ ସକାଳ ହୁଏ ଆଉ କେତେବେଳେ ସନ୍ଧ୍ୟା ସେ ନିଜେ ଜାଣନ୍ତିନି । ଧୋବ ଫରଫର ଜରିଦିଆ ଶାଢ଼ୀ ପରିହିତା, ଶୁଭ୍ରକେଶୀ, ପାକୁଆ ପାଟି ପାନରସରେ ନାଲି । ଗାଁରେ ସବୁ ପୂଜା ପର୍ବପର୍ବାଣିରେ ଉପାସ ରହି, ହାତଯୋଡ଼ି ପଡ଼ିଥିବେ । ସ୍ୱାମୀ, ପିଲେ ସଂସାର ଛାଡ଼ିବା ପରେ ତାଙ୍କର ଆଉ କୋଉ ଥିରେ ମୋହ ?

"ମୋର ଯୋଡ ପିତ୍ତଳ ଖିଲିକାତିଟା ଅଛି, ମୋ ବାପା ବାହାଘର ବେଳେ ମୋ ପାଇଁ ତିଆରି କରେଇ ଥିଲେ; ସେଇଟି ମୋର ଭାରି ପ୍ରିୟ ।"

"ଏ ତ ସାମନ୍ୟ କଥା । ଆପଣ ଚିନ୍ତାମୁକ୍ତ ରୁହନ୍ତୁ ।" ବାବା ଏହା କହି ନିଜର ଦୁଇ ହାତ ଯୋଡ଼ିଲେ ।

ଭିମା ସାହୁ ବାବାଙ୍କ ପାଖରେ ପହଞ୍ଚିଲା ବେଳକୁ ରାତି ନଅଟା ପାଖାପାଖି । ଦୋକାନ ଛାଡ଼ି ଆସିପାରିବନି ବୋଲି ସେ ନିଜେ ଏଇ ସମୟଟି ତା ପାଇଁ ଉପଯୁକ୍ତ ବୋଲି ଚେଲାଙ୍କୁ କହି ଠିକ୍ କରିଥିଲା । ବାବାଙ୍କୁ ଦଣ୍ଡବତ ହେଇ ଆସନରେ ବସିଲା । ବାବାଙ୍କର ବିଶ୍ରାମ ସମୟ ଉପନୀତ ହେଇଛି ବୋଲି ଜଣେ ଚେଲି ଆସି କହିଗଲେ ।

ଭୀମା ସାହୁ ଅପେକ୍ଷା ନ କରି କହିଲା — "ବହୁ କଷ୍ଟରେ ମୁଁ କିଛି ଟଙ୍କା ବ୍ୟାଙ୍କରେ ସଞ୍ଚୟ କରିପାରିଛି ।"

ବାବା ଧୈର୍ଯ୍ୟର ସହ ଶୁଣିଲେ ।

"ମୋ ପୁଅ ନରିଆଟା ନେଇ ଆଣି ଥୋଇବା ପିଲା ନୁହଁ । କଞ୍ଚା ଟଙ୍କା ହାତରେ ପଡିଲେ ହଡ଼ବଡ଼େଇଯିବ ।"

"ସମସ୍ତେ କଅଣ ସବୁ କଥାକୁ ପାରନ୍ତି ? ସବୁ ଲୀଳାମୟଙ୍କର ଇଚ୍ଛା ।"

"ନଗଦ ଟଙ୍କା ଯଦି ସାଥିରେ ନେଇପାରନ୍ତି, ମୋର ଆଉ କିଛି ଚିନ୍ତା ନାହିଁ ।"

"କିନ୍ତୁ ସେଥିପାଇଁ ଉଚିତ୍ ପରିମାଣର ଦାନଧର୍ମ କରିବାକୁ ପଡ଼ିବ ।" ବାବା ଶ୍ଲୋକ ଆବୃତ୍ତି କଲେ—"ଶର୍କରା ରଜନୀ ତୁରଙ୍ଗମଂ ଚ ପୀତଧାନ୍ୟମପି ପୀତାମ୍ବରମ୍ । ପଦ୍ମରାଗଂ ଲବଣଂ ଚ ପ୍ରିତଯେ ସୁରଗୁରୋ ପ୍ରଦୀୟତାମ୍ । ଗୁଡ଼, ହଳଦିଗୁଣ୍ଡ, ଅଶ୍ୱ ବା ତା ସମାନ ଅର୍ଥ, ହଳଦିଆ ବସ୍ତ୍ର, ଗୋବିନ୍ଦଭୋଗ ଧାନ, ପଦ୍ମରାଗ ମଣି, ଲୁଣ ଆଦି ବିପ୍ରଙ୍କୁ ଦକ୍ଷିଣା ସହ ଦାନ କରିବେ । ଏତଦ୍ ବ୍ୟତୀତ

ବ୍ରହ୍ମଯଷ୍ଟି ମୂଳକୁ ବ୍ରାହ୍ମଣଙ୍କ ଦ୍ୱାରା ନିଜ ନାମ, ଗୋତ୍ରରେ ଅଭିମନ୍ତ୍ରିତ କରାଇ ଶହେ ଆଠ ଆହୁତି ପ୍ରଦାନ ପୂର୍ବକ ହୋମ କରାଇ ପୁରୁଷମାନେ ଦକ୍ଷିଣବାହୁରେ ଧାରଣକଲେ ମନୋବାଞ୍ଛା ପୂରଣ ହେଇଥାଏ ।"

ବାବାଙ୍କ ପାଖରୁ ଫେରି ଭୀମା ସାହୁ ଘରେ ପହଞ୍ଚିଲା ବେଳକୁ ରାତି ଦଶଟା ପାଖେଇଲାଣି । ପୁଅବୋହୂ ନ ଖାଇ ଅପେକ୍ଷା କରିଥିଲେ ।

"ପରିବାରର ସୁଖସମୃଦ୍ଧି ହିଁ ମୋର କାମନା । ମୋର ଆଉ କେତେ ଦିନ? ତୁମେମାନେ ଖୁସିରେ ରହିଲେ ମୁଁ ଶାନ୍ତିରେ ଆଖି ବୁଜିବି ।" ଭାତ ଗୁଣ୍ଡାଏ ପାଟିକୁ ନେଉ ନେଉ ଭୀମା ସାହୁ କହିଲା ।

ଶ୍ୱଶୁରଙ୍କର ଏମିତି କଅଁଳ କଥା ଶୁଣି ବୋହୂ ସୁଷମା ଟିକେ ଆଶ୍ଚର୍ଯ୍ୟ ହେଲା । ସେ ମନେ ମନେ ଭାବିଲା ଏସବୁ ବୋଧେ ସେଇ ଚମତ୍କାରୀ ବାବାଙ୍କର ପ୍ରଭାବ । ତା ପୁଅ ଦେହଟା ସଦାବେଳେ ଖରାପ, ବର୍ଷକ ଯାକ ଥଣ୍ଡାକାଶ ଲାଗିରହୁଛି । ସେ ଯଜ୍ଞଦିନ ନିଶ୍ଚୟ ମାନସିକ କରିବ ।

ଚିତାଲାଗି ଅମାବାସ୍ୟା ଦିନ କୁକୁଡ଼ାଡାକ ବେଳୁ ଶଙ୍ଖଧ୍ୱନୀ, ଝାଞ୍ଜ, ମୃଦଙ୍ଗରେ ଯଜ୍ଞସ୍ଥାନ ପ୍ରକମ୍ପିତ ହେଲା । ଗାଁ ଲୋକେ ଦଳ ଦଳ ହେଇ ସେଠିକି ଆଗେଇଲେ । ଭୀମା ସାହୁର ବୋହୂ ସୁଷମା ପଡ଼ୋଶୀ ରାଧା ମାଉସୀ ଓ ଅନ୍ୟ ଗାଁ ସ୍ତ୍ରୀଲୋକଙ୍କ ମେଳରେ ଫୁଲଫଳ ଡ଼ାଲା ଧରି ସେଠି ପହଞ୍ଚିଲା ।

ପବିତ୍ର ମନୋଜ୍ଞ ପରିବେଶ । ବାବାଙ୍କ ଚେଲାଚେଲି ଆଶ୍ରମ ଚାରିକଡ଼ ସଫା ପରିଷ୍କାର କରି ଗୋବର ପାଣିରେ ଲିପି ଥାଆନ୍ତି । ଅଦୂରରେ ଗୋଟେ ନିମ ଗଛର ଗଣ୍ଡିରେ ହଳଦି ସିନ୍ଦୁର ବୋଳାଯାଇ ସେଥିରେ ପୂଜା ସୂତା ଗୁଡ଼ାଯାଇଥାଏ । ଦିଟା ଛୋଟ କଦଳୀ ଗଛ ପ୍ରବେଶ ଦ୍ୱାରରେ ଲଗାଯାଇଥାଏ, ତା ପାଖରେ ମାଟିର ଦିଟା ପୂର୍ଣ୍ଣକୁମ୍ଭ ରଖା ହେଇଥାଏ । ଧାଡ଼ି ଧାଡ଼ି ରଙ୍ଗିନ୍ କାଗଜ ପତାକା ଆଶ୍ରମରୁ ପ୍ରବେଶ ଦ୍ୱାର ପର୍ଯ୍ୟନ୍ତ ବନ୍ଧା ଯାଇଥାଏ । ଆଶ୍ରମର ପୂର୍ବ କୋଣରେ ମାଟିର ବେଦୀଟିଏ ଗଢ଼ା ଯାଇ ତାର ମଧ୍ୟଭାଗରେ ଯଜ୍ଞକୁଣ୍ଡଟିଏ ପ୍ରସ୍ତୁତ କରାଯାଇଥାଏ । ବେଦୀ ଚାରିକଡ଼ରେ ପତଳା ବାଉଁଶ ପୋତା ଯାଇ ଚାରି କଡ଼ର ଉପର ମୁଣ୍ଡକୁ ସରୁ ବାଉଁଶ ଦ୍ୱାରା ଯୋଡ଼ା ଯାଇଥାଏ । ସେଥିରୁ ହଳଦିଆ ଆଉ କମଳା ରଙ୍ଗର ଗେଣ୍ଡୁଫୁଲ ହାର ଝୁଲୁଥାଏ ।

ଯଜ୍ଞ ଆୟୋଜନରେ ଗାଁବାଲା ବାବାଙ୍କ ଚେଲାଚେଲିଙ୍କୁ ଅକୁଣ୍ଠ ଚିତ୍ତରେ ସାହାଯ୍ୟ କଲେ । କିଏ ଖୁସିରେ ଆଣିକି ନିଜ ବଗିଚାର ଫୁଲ ଦେଲା ତ କିଏ ଫୁଲମାଳା ଗୁନ୍ଥି ଦେଲା, ଆଉ କିଏ ବାଡ଼ିରୁ କଦଳୀ ଗଛ ଆଣିକି ଦେଲା । ଗାଁର

ବେହେରା ଯାହାର ଗୃହ ଯୋଡ଼ା ଦୁଧିଆଳୀ ଗାଈ ଥିଲେ ବିନା ମୂଲ୍ୟରେ ଯଜ୍ଞ ପାଇଁ ଦଶ ଲିଟର ଖାଣ୍ଟି ଗୁଆ ଘିଅ ଯୋଗାଇଲା । ତା ଛଡ଼ା ଯଜ୍ଞ ପାଇଁ ପ୍ରୟୋଜନ ମୁତାବକ ଖାଣ୍ଟି କ୍ଷୀର ଆଉ ବସା ଦହି ମଧ୍ୟ କୃତକୃତ୍ୟ ହେଇ ଦେଲା ।

ଯଜ୍ଞକୁଣ୍ଡ ପାଖରେ ବସି ବାବା ଅଗ୍ନି ପୂଜା ଆରମ୍ଭ କଲେ । ହୋମ କୁଣ୍ଡରେ ଛୋଟ ଛୋଟ କାଠଖଣ୍ଡ ସଜା ହେଇ ଥୁଆହେଇଥାଏ । ସେ ଛୋଟ କାଠ ଖଣ୍ଡରେ ଅଗ୍ନି ଧରାଇଲେ । ଅଗ୍ନିରେ ଘୃତ ଢାଳି ଗାୟତ୍ରୀ ମହାମନ୍ତ୍ର ଉଚ୍ଚାରଣ କଲେ — "ଓଁ ଭୂର୍ଭୁବ ସ୍ୱାଃ ତସ୍ୟ ବିତୁର୍ବରେଣ୍ୟ ଭର୍ଗୋଦେବସ୍ୟ ଧୀମହି ଧିୟୋ ୟୋ ନଃ ପ୍ରଚୋଦୟାତ୍ ।"

ଭକ୍ତଗଣଙ୍କ ପାଇଁ ବାବା ବାଖ୍ୟା କଲେ — "ସେହି ପ୍ରାଣସ୍ୱରୁପ, ଦୁଃଖନାଶକ, ସୁଖସ୍ୱରୂପ, ଶ୍ରେଷ୍ଠ, ତେଜସ୍ୱୀ, ପାପନାଶକ, ଦେବସ୍ୱରୁପ, ପରମାତ୍ମାଙ୍କୁ ଆମେ ଅନ୍ତରାତ୍ମାରେ ଧାରଣ କରିବା, ସେହି ପରମାତ୍ମା ଆମର ବୁଦ୍ଧିକୁ ସତ୍ ମାର୍ଗରେ ପ୍ରେରିତ କରିବେ ।"

ଶଙ୍ଖ ହୁଳହୁଳି ଦେଇ ଉପସ୍ଥିତ ଭକ୍ତମଣ୍ଡଳୀ ଲମ୍ବ ଲମ୍ବ ହେଇ ପରମପିତାଙ୍କୁ ପ୍ରଣିପାତ ଜଣାଇଲେ ।

ବାବା ଅଗ୍ନିକୁ କାଠ ଖଣ୍ଡେ ପକେଇ ଘିଅ ଢାଳିଲେ । କେଇଟା ମୂହୁର୍ତ୍ତରେ ଖାଣ୍ଟି ଗୁଆଘିଅର ସୁଗନ୍ଧ ଚାରିଆଡ଼େ ଖେଳିଗଲା ।

"ଓଁ ହ୍ରିଙ୍ଗ୍ କ୍ଲିଙ୍ଗ୍ ସ୍ଲିଙ୍ଗ୍ ଅଗ୍ନ୍ୟାୟ ନମଃ ।
ଓଁ ଜିଙ୍ଗ୍ ପିଙ୍ଗ୍ ବିଙ୍ଗ୍ ଆକାଶାୟ ନମଃ ।"

କେହି ଖବର ଦେଇଥିବା ହେତୁ ବା ନିଜସ୍ୱ ସୂତ୍ରରୁ ଏକ ଘରୋଇ ଟିଭି ଚ୍ୟାନେଲର ସାମ୍ବାଦିକ କ୍ୟାମେରାମ୍ୟାନ ସହ ସେଠି ପହଞ୍ଚିଲେ । ବାବାଙ୍କର ଚେଲା ତଥା ଗାଁ ଲୋକେ ସେମାନଙ୍କୁ ଯଥାମାନ୍ୟ ଦେଇ ବାବା ପ୍ରଚାରପ୍ରିୟ ନ ହୋଇଥିବାରୁ ରେକର୍ଡିଙ୍ଗ କରିବାକୁ ବାରଣ କଲେ । ଏହି ଯଜ୍ଞ ଗାଁର ସମୃଦ୍ଧି ପାଇଁ, ଗାଁବାସୀଙ୍କ ଉନ୍ନତି କଳ୍ପେ ହେଉଛି ବୋଲି ସୂଚନା ଦେଲେ ।

ପ୍ରସାଦ ବିରତି ବେଳକୁ ଆଖପାଖ ଅଞ୍ଚଳରୁ ବେଶ୍ କିଛି ଲୋକ ତଥା ପତ୍ରକାର ସେଠି ଏକାଠି ହେଇଥିବାର ଦେଖାଗଲା । ସମସ୍ତଙ୍କୁ ସାଦରେ ଫଳ ଓ ଖେଚୁଡ଼ି ପ୍ରସାଦ ଦିଆଯାଇ ଆପ୍ୟାୟିତ କରାଗଲା । ଯଜ୍ଞଦିନର ପବିତ୍ରତା ଓ ସଫଳତା ପାଇଁ ବାବା ଯେ ସେଦିନ କୌଣସି ପ୍ରକାର ଆଲୋଚନା କରିବେ ନାହିଁ ତାହା ସବିନୟେ ବୁଝାଇ ପତ୍ରାକାରମାନଙ୍କୁ ତା ପରଦିନ ଆସିବାକୁ ନିମନ୍ତ୍ରଣ କରାଗଲା । ପୂଜା, ହୋମ, ହୁଳହୁଳି, ଗପସପ, ପିଲାଙ୍କ ହସଖୁସିରେ

ସନ୍ଧ୍ୟା ନଇଁଲା । ଯେ ଯାହାର ମନୋସ୍କାମନା ପ୍ରାର୍ଥନା କରି ଦକ୍ଷିଣା ଦେଇ ଘରୁକୁ ଫେରିଲେ । ଯେଉଁ ନଅ ଜଣ ଦେହତ୍ୟାଗ ପରେ ବିଶେଷ ସୁବିଧା ଆଶା କରୁଥିଲେ, ସେମାନେ ଜଣକ ପରେ ଜଣେ ବାବାଙ୍କ କୋଠରିକୁ ଯାଇ ଆଦେଶାନୁସାରେ ଯଥାବିଧି ଦାନଦକ୍ଷିଣା ଦେଇ ଗଭୀର ଆତ୍ମସନ୍ତୋଷରେ ଫେରିଲେ । ଭୀମା ସାହୁ ଘରୁକୁ ଫେରୁ ଫେରୁ ରାତି ପ୍ରାୟ ଏଗାର । ବାବାଙ୍କ କଲ୍ୟାଣରୁ ତାଙ୍କ ଘର ଶ୍ରୀମଣ୍ଡିତ ହେବ ବୋଲି ତାଙ୍କର ପୂର୍ଣ୍ଣ ବିଶ୍ୱାସ, ଏକଥା ପୁଅବୋହୂକୁ କହି ଗୋଡ଼ହାତ ଧୋଇ ଶୋଇବାକୁ ଗଲେ ।

ଯଜ୍ଞ ପରଦିନ ସକାଳ । ଦୂରରୁ କୁଟୀର ସ୍ପଷ୍ଟ ଦେଖାଯାଉଥିଲା । କେହି ଜଣେ ପାଖକୁ ଯାଇ ଆବିଷ୍କାର କଲା — କୁଟୀର ଭିତରୁ କିଛି ସୋର୍ ଶବଦ ଆସୁନି । ବାବାଙ୍କ ଚେଲାଚେଲି ବି କେହି ଦେଖା ଯାଉନାହାନ୍ତି । କଅଣ ଏତେ ଡ଼େରି ଯାଏ ସମସ୍ତେ ଶୋଇଛନ୍ତି ? କିନ୍ତୁ ଖୁବ୍ ବେଶି ନୁହେଁ, ଅଳ୍ପ ସମୟ ମଧ୍ୟରେ ଗାଁରେ କଥା ଖେଳିଗଲା — ବାବା ଅନ୍ତର୍ଦ୍ଧାନ ।

ଗଉଖ ଠିଆ କରେଇ ନରିଆ ଘର ଭିତରକୁ ଧାଇଁଯାଇ କହିଲା — "ବାବା ଆଉ ତାଙ୍କ ଲୋକେ କେହି ଦେଖା ଯାଉନାହାନ୍ତି ।"

"ଏଁ?" ଦାନ୍ତ ଘଷୁଥିବା ଭୀମା ପାଟିରୁ ବାହାରିଲା ଓ ତା ହାତରୁ ପାଣି ଲୋଟାଟା ଖସିପଡ଼ିଲା ।

ସେଦିନ ଭୀମା ସାହୁ ଦୋକାନ ଆଗରେ ବସି ଲୋକେ ଗପ ଜମେଇଲେ ।

"ମୁଁ କହୁ ନ ଥିଲି ଭଣ୍ଡ ବାବା ବୋଲି ।"

"ସେ ଚେଲିଙ୍କ ଭିତରୁ ଜଣେ କାଳେ ତା ସ୍ତ୍ରୀ!"

"ସ୍ତ୍ରୀ ଫ୍ରୀ କିଛି ନୁହଁ ମ! ସବୁଗୁଡ଼ାଙ୍କୁ ରଖିଛି!"

"ୟେ ଡ଼ହର୍ ବାବା ମୋ ଶ୍ୱଶୁର ଘର ଗାଁରେ ମାଡ଼ ଖାଇଥିଲା । ମୁଁ ଏଇନା ଜାଣିବାକୁ ପାଇଲି ।"

"ମୋର ତ ଆରମ୍ଭରୁ ସନ୍ଦେହ ହେଉଥିଲା ।"

"ୟେ ଗୋଟେ ଦୁର୍ଦ୍ଦାନ୍ତ ଡ଼କାୟତ ଦଳ । କୁହ ଆମ ଜୀବନ ବଞ୍ଚିଯାଇଛି ।"

ଏମିତି ଚର୍ଚ୍ଚା ବେଶ୍ କିଛି ଦିନ ଷଠିପୁର ଆଉ ତା ଆଖପାଖ ଅଞ୍ଚଳରେ ଚାଲିଲା । ଖବରକାଗଜରେ ମଧ୍ୟ ଛୋଟିଆ ବକ୍ସରେ ଖବରଟିଏ ବାହାରିଲା ।

ବାବାଙ୍କ ଷଠିପୁର ଗାଁରେ ଆବିର୍ଭାବ ତଥା ଅନ୍ତର୍ଦ୍ଧାନକୁ ପ୍ରାୟ ଛଅ ମାସ

ହେଲାଣି । ବାବାଙ୍କ ରାତାରାତି ଫେରାର ଖବର ପାଇବା ପରେ ଭୀମା ତେଲି ମନରେ ଯେଉଁ ତୀବ୍ର ପ୍ରତିକ୍ରିୟା ହେଲା, ତା ପ୍ରଭାବରେ ସେ ରାତିରେ ନିଦରେ ବାଉଳି ଗୁଉଳି ହେଲା । ଧୀରେ ଧୀରେ ଗଭୀର ବିଷାଦ ହେତୁ ବିଛଣାରୁ ଆଉ ଉଠି ସ୍ୱାଭାବିକ ହେବା ସମ୍ଭବ ହେଲାନି । ବର୍ତ୍ତମାନ ସେ ଶଯ୍ୟାଶାୟୀ । ନିତ୍ୟକର୍ମ ଶେଷ ପାଇଁ ନରିଆ ବାପାକୁ ଟେକି ଟେକି କୂଅମୂଳକୁ ନେଇଯାଏ, ପୁଣି ଖୁଏଇ ପିଏଇ ଖଟରେ ଶୁଏଇ ଦିଏ । ଦୋକାନ ଦାୟିତ୍ୱ ଏବେ ପୂରା ନରିଆ ଉପରେ । ଅବେଳରେ ଯଦି କିଛି ଦରକାର ପଡ଼େ, ବୁଢ଼ା ବୋହୂକୁ ନରମେଇ ଡ଼ାକେ । ସୁଷମା ମନ ହେଲେ ଶୁଣେ, ନ ହେଲେ ଉଁ ଚୁଁ କିଛି ଜବାବ ଦିଏନି ।

ସେଦିନ କୂଅମୂଳେ ସନ୍ଧ୍ୟା ଲୁଗା ଧୋଇବା ବେଳେ ସୁଷମା ଓ ପଡ଼ୋଶୀ ରାଧା ମାଉସୀ ଏଣୁ ତେଣୁ ଗପୁଥିଲେ ।

"କିଏ ଭାବିଥିଲା, ଏ ବଦମାସ ବୁଢ଼ା ପେଟରେ ଏତେ ବିଷ ? ବ୍ୟାଙ୍କ ଟଙ୍କା ନେଇ ସ୍ୱର୍ଗକୁ ଯାଇଥାନ୍ତା । ଆମ କଥା ନ ହେଲା ନାହିଁ, ନାତି ଛୁଆ କଥା ଟିକେ ମନକୁ ଆସିଲାନି! କେଜାଣି କେତେ ସେ ବାବାଜୀକୁ ଦେଲେ, ସତକଥା କଅଣ ଏ ବୁଢ଼ା ପେଟରୁ ବାହାରିବ ? ଆମେ ଯାହା ଏବେ ଧନ୍ଦି ହେଉଛୁ ।"

ରାଧା ମାଉସୀ କଅଣ କହିବାକୁ ଯାଉଥିଲେ, ତାଙ୍କ ନଜର ସୁଷମା ଗଳାରେ ପଡ଼ିଲା । ନୂଆ ସୁନା ହାରଟେ ଚକ୍ ଚକ୍ କରୁଥିଲା । ସେ ହସ ଗୁପି ପଚାରିଲେ — "ଆଲୋ ନରିଆ କରେଇ ଦେଇଛି କି, ନୂଆ ସୁନା ହାର ? ଜାଣ, ଯଜ୍ଞ ଶୁଭଫଳ ଆମ ଗାଁରେ କେବଳ ତୋତେ ମିଳିଲା । ନାଁ ଏ ବାବା ଆସିଥାନ୍ତେ ନାଁ..."

ତାଙ୍କୁ କଥା ପୂରା କହିବାକୁ ନ ଦେଇ ସୁଷମା ଉତ୍ତର ଦେଲା — "ନିର୍ଜଳା ବ୍ରତ ରଖିଥିଲି ଟି! ଏମିତି ଶୁଖିଲାରେ କାହାକୁ କିଛି ମିଳେ ନା କଅଣ ?"

(ରେବତୀ, ୨୦୨୦)



# କବି, କବିପତ୍ନୀ ଓ କାବ୍ୟନାୟିକା

କବି ପ୍ରତିଦିନ ରାତିରେ ସେଇ ମୁହଁଟିକୁ ମନେ ପକାନ୍ତି । ନିଜ ଚୌକିରେ ବସି ଟେବୁଲ ଉପରେ ମୁଣ୍ଡ ରଖି ସେ ଯେତେବେଳେ ସ୍ୱପ୍ନର ଦୁନିଆକୁ ଚାଲିଯାଆନ୍ତି, ସେଇ ଲାଲିତ୍ୟମୟୀ ନାରୀଜଣକୁ ଖୋଜନ୍ତି । ଫୁଲର ସୁରଭି ପବନରେ ଖେଳିଗଲା ଭଳି ସେ ଏକ ପରିଚିତ ଆବେଗରେ ଭାବାବିଷ୍ଟ ହୋଇଯାଆନ୍ତି । ସେଇ ହସ ହସ ମୁହଁଟି ଦିଶେ ଆକାଶର ସୀମାହୀନ ନୀଳରେ, ସବୁଜ କେରା କେରା ଘାସରେ, ଲାଲ୍ ହଳଦି ଫୁଲରେ ।

ସେଦିନ କବିତାର ଖିଅଟିଏ ମନରେ ଧରାଦେଇ ପୁଣି ହଜିଯାଉଥାଏ । ବାରମ୍ବାର ଦୁଇ ଧାଡ଼ି ଲେଖି ପୁଣି ତାକୁ କାଟିବାକୁ ପଡୁଥାଏ । ଏଭଳି ମୁହୂର୍ତ୍ତ ସବୁ କି ଯନ୍ତ୍ରଣାଦାୟକ ସତେ! ଶବ୍ଦଟେ ଖୋଜିଲେ ମିଳେନି, ହେଲେ ଭାବାବେଗରେ ଦେହମୁଣ୍ଡ କଅଣ ହେଇଯାଏ, ସବୁ ଯେମିତି ଓଲଟ ପାଲଟ ହେଇଯିବ ଯଦି ଈପ୍ସିତ ଶବ୍ଦଟି ନ ମିଳେ । ସେ ସମୟରେ ଅନ୍ୟ ଯେତେ ଇଚ୍ଛାଅନିଚ୍ଛାର ହିତାହିତ ଜ୍ଞାନ ଆଉ ରହେନି । ଖାଲି ଯଦି ସେଇ ଶବ୍ଦଟି ମିଳିଯାଏ, କେବଳ ସେଇ ଶବ୍ଦଟି ମିଳିଯାଏ!

କ୍ଳାନ୍ତିରେ ଟିକେ ଆଖି ମୁଦିଛନ୍ତି, ନାରୀମୂର୍ତ୍ତିଟିଏ ଆସି ପାଖରେ ଠିଆ ହେଲା ଭଳି ସେ ଅନୁଭବ କଲେ । ତାଙ୍କ ପତ୍ନୀ ଯେ ଏମିତି ଆସି ଠିଆହୁଅନ୍ତିନି ତା ନୁହେଁ, କିନ୍ତୁ ଦେହଗନ୍ଧରୁ ବୁଝିଲେ ସେ ଅନ୍ୟ କେହି । କିଛି କ୍ଷଣ ଅବାକ୍ ହେଇ ପାଟି ଆଁ କରି କେବଳ ଚାହିଁ ରହିଲେ: ଇଏ ସେଇ, ଇଏ ସେଇ କାବ୍ୟନାୟିକା ।

"କଅଣ ଏତେ ଦେଖୁଛ ?" ନୀରବତା ଭାଙ୍ଗି ନାରୀ କଣ୍ଠ ଶୁଭିଲା ।

"ତୁମକୁ ।"

"ତା ମୁଁ ବୁଝିପାରୁନି କି?" ଏଥର ଖିଲିଖିଲି ହସରେ କୋଠରି ଉଚ୍ଛୁଳି ପଡ଼ିଲା ।

"ମୁଁ ନିଜକୁ ବିଶ୍ୱାସ କରିପାରୁନି!"

"ଏଥିରେ ଅବିଶ୍ୱାସ କରିବାରେ କଅଣ ଅଛି?" ମୁକୁଳା ବାଳ ସଜାଡୁ ସଜାଡୁ ତାଙ୍କ କାନ୍ଧରେ ହାତ ରଖି କାବ୍ୟନାୟିକା ପୁଣି ହସିଲେ ।

କବିଙ୍କର ଧମନୀରେ ବିଦ୍ୟୁତ୍ ଖେଳିଗଲା କି କଅଣ—"ତୁମକୁ ମୁଁ କେବେଠୁଁ ଅପେକ୍ଷା କରିଛି, ଜାଣ?"

"କେବେଠୁଁ?" ଭାସିଆସିଲା ସେଇ ଯୌନଉଦ୍ଦୀପକ ନାରୀକଣ୍ଠ ।

"ସମୟର ଆରମ୍ଭରୁ ।"

"ସତରେ?" ହସି ହସି ତାଙ୍କ ଉପରେ ଲୋଟିପଡ଼ିଲେ କାବ୍ୟନାୟିକା ।

"ସତ କହୁଛି ତୁମ କଥା ଭାବି ଭାବି ମୁଁ ବଞ୍ଚିରହିଛି ଏ ଅସାର ସଂସାରରେ ।"

"କାହିଁକି, କି ସୁନ୍ଦର ସ୍ତ୍ରୀ ପୁଅ ଝିଅ ସଂସାର ତୁମର । ଅସୁବିଧା କୋଉଠି ରହିଲା, ଏ ସଂସାର ଅସାର କାହିଁକି ହେଲା?"

"ଛାଡ଼, ତୁମେ ସେସବୁ ବୁଝିବନି ।"

"ଏମିତି କି କଥା ମୁଁ ବୁଝିପାରିବିନି?"

"ତୁମେ ବିଶ୍ୱାସ କର ମୁଁ ତୁମ ପ୍ରେମରେ ପଡ଼ିଯାଇଛି ।"

"ସେଇଟା ହିଁ ତ ସମସ୍ୟା ।"

"ସମସ୍ୟା?"

"ନୁହେଁ ତ ଆଉ କଅଣ? ମୋ ପ୍ରେମରେ କିଏ ଆଉ ପଡ଼ିନି କୁହ ତ?"

"ସେମିତି କୁହନି । ମୋର ତୁମ ପ୍ରତି ପ୍ରେମ ନୈସର୍ଗିକ । ମୋ ଭଳି କେହି ତୁମକୁ ଏମିତି ଭଲ ପାଇପାରିବନି । ମୋର ପତ୍ନୀ ତ କବିତାର "କ" ବୁଝନ୍ତିନି । ଓଲଟି ସବୁବେଳେ ମୋତେ ସମାଲୋଚନା କରନ୍ତି । ତୁମେ କଅଣ ବୁଝିପାରୁନ ମୁଁ କେତେ ନିଃସଙ୍ଗ?"

"ହୁଁ..." ଟିକେ ଗମ୍ଭୀର ହୋଇ କାବ୍ୟନାୟିକା କହିଲେ, "କାହିଁକି, ତୁମ ପୁଅଝିଅ ? ସେମାନେ ବି ତୁମକୁ ବୁଝୁନାହାନ୍ତି ?"

"ଯେଝା ବାଟରେ ଯେ । ପୁଅ ତାର ଗିଟାର୍ ବଜଉଛି । ପପ୍ ଗାଉଛି । ଝିଅ ଡାକ୍ତରୀ ପଢୁଛି ।"

"ତୁମ କବିତା ପଢ଼ନ୍ତିନି ?"

"ସେମାନଙ୍କର ସମୟ କାହିଁ ?"

"ଓହୋଃ, ଏମିତି କଥା ?"

"ହଁ । ଏମିତି ଜୀବନର ଅର୍ଥ କଅଣ କୁହ ?"

"ତୁମ ପତ୍ନୀ କାହିଁକି ତୁମ କବିତା ଭଲପାଆନ୍ତିନି ?"

"ହେୟଃ, ଗବଗାଣ୍ଡୁଟାଏ, କୋଉଠି ଥିଲା କେଜାଣି, ମୋ କପାଳରେ ଜୁଟିଛି । ଦିନରାତି ଖାଲି ଘରଦ୍ୱାର, ଢ଼ିଙ୍କିବଗ, ସୁନା ଗହଣା ବାଜେ ଗପ । ସେ ମୋ କବିତା କଅଣ ବୁଝିବ ?"

"ହୁଏତ ତୁମେ ବି ତାଙ୍କ ଅନ୍ତରର କବିତାକୁ ଆଜିଯାଏ ବୁଝିନ ?"

କବି କିଛି ନ କହି ଚୁପ୍ ରହିଲେ ।

"ତୁମେ ପ୍ରଥମେ ତୁମ ସ୍ତ୍ରୀଙ୍କୁ ଯେମିତି କବିତା ଭଲ ଲାଗିବ ସେମିତି ଲେଖୁନ ? ସେ କେମିତି ତୁମ ପିଲା ଦିଜଣଙ୍କ ଯତ୍ନ ନିଅନ୍ତି । କେମିତି ଦିନରାତି ତୁମ ଆରାମ ପାଇଁ ବ୍ୟବସ୍ଥା କରନ୍ତି..."

"ତୁମେ ସିଧା ସିଧା କହୁନ କଅଣ କହିବାକୁ ଚାହୁଁଛ ?"

"ତୁମ ଭାବନା ଉପରେ ତ ମୋର ନିୟନ୍ତ୍ରଣ ନାହିଁ । ମୁଁ କେମିତି କହିବି ମୋ କଥା ଭାବନା !"

କବି କିଛି ସମୟ କ୍ଷୁବ୍ଧ ହୋଇ ବସିରହିଲେ ।

"ଛାଡ଼ ସେକଥା ।" କାବ୍ୟନାୟିକା ପରିବେଶ ହାଲୁକା କରିବାକୁ କହିଲେ — "ଆଉ, ତୁମ କବିତା ଗୋଟେ ଶୁଣେଇଲ ?"

ଏଥର କବିଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା । କବି ନିଜ ଦିନଲିପି କାଢ଼ି ପୃଷ୍ଠା ଓଲଟେଇଲେ ।

"ଗତ ସପ୍ତାହରେ ଲେଖିଛି, ମୋର ସଦ୍ୟତମ କବିତା, ଶୁଣ:

ପ୍ରିୟତମା,
ତୁମେ ଯଦିଓ କେଉଁଠି ଅଛ ଜାଣେନା
ଅହରହ ଝୁରୁଥାଏ ମୁହିଁ
ଦୁର୍ବିସହ ଏ ସଂସାର ଜଞ୍ଜାଳ
ତୁମେ ମୋର ଆଦି ଅନ୍ତ
ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ
ତୁମେ ମୋର ଆଦି ଅନ୍ତ ।"

କବିତା ଶୁଣି କାବ୍ୟନାୟିକା ହସିହସି ଗଡ଼ିଗଲେ: "ପ୍ରେମିକାକୁ ନେଇ କବିତା ଲେଖିବ, ଆଉ ଆଶା କରିବ ତୁମ ସ୍ତ୍ରୀ ବୁଝିବେ? ଛାଞ୍ଚୁଣି ପହଁରରେ ମାରୁନାହାଁନ୍ତି?"

କବି ମୁହଁ ଫୁଲେଇଲେ— "ତୁମର ସବୁ କଥାରେ ବ୍ୟଙ୍ଗ! ତୁମକୁ ଝୁରିଝୁରି ମୁଁ କବିତାଟି ଲେଖିଛି ।"

"ଆଚ୍ଛା ହଉ ।"

ଏଥର କବି ଓ କାବ୍ୟନାୟିକା ପରସ୍ପର ମୁହଁକୁ ଚାହିଁ ଅନେକ ସମୟ ବସିରହିଲେ ।

କବି ଥିରି କହିଲେ, "ଯେତେବେଳେ ତୁମେ ଏମିତି ବସ ଲାଗେ ଯେମିତି..."

"ଯେମିତି, ଯେମିତି," କାବ୍ୟନାୟିକା କହିଲେ, "ଏହି ଭଲପାଇବାର
ଦେହ ଧରି ଏ ପୃଥିବୀ ହୁଏତ ବା ଏଡ଼େ ରୂପବତୀ
ହଳଦୀ ଓ ଅଳତାର ଦାଗ ଗୋଳି ଆକାଶରେ ଫାଲଗୁନର ଦିନ ଯେବେ ଫେରେ
ପଉଷର କୁହୁଡ଼ିରେ ଘୋଡ଼ିହୋଇ ଆମ୍ବତୋଟା ଚୁପଚାପ୍ ନିଛାଟିଆ ଜାମୁକୋଳି ବଣ
ଦିପହର ଖରା ପୁଣି ଜାଳିଦିଏ ଜ୍ୟୈଷ୍ଠ ମାସ ବିଲ, ବାଟ, ନିଛାଟିଆ ଚରା
ସେତେବେଳେ ମଣିଷର ରକ୍ତରେ ଜୀବନ୍ତ ହୁଏ ହଠାତ୍ ଅତୀତ ତାର
ପୁଞ୍ଜିଭୂତ କାମନାର ଯୁଗଯୁଗ ସ୍ମୃତି କେତେ ଏ ଗାଆଁର ପୁରୁଷ ପୁରୁଷ ।"

"ବାଃ, ତୁମେ ଏମିତି ଚମତ୍କାର କବିତା ଗଢ଼ିପାର!"

"ନାଁ, ମୋର ନୁହେଁ ତୁମ ଗୁରୁଙ୍କର ।"

"ମୋ ଗୁରୁ ? କିଏ ?"

"ତୁମେ ଗୁରୁ କିଏ ଜାଣିନ ?" ଅବାକ୍ ହୋଇ କାବ୍ୟନାୟିକା ପଚାରିଲେ, ଆଉ କହିଲେ, "ସେଇ ଯେ ଲେଖିଛନ୍ତି:

ଏ ଗତିର ଛାତି ତଳେ ଏ ସ୍ଥିର ଜମାଟ ସ୍ତବ୍ଧତା
ଅସ୍ତତାରା ଆଲୁଅରେ ବାଲିରେ ବା ଦେଖାଯାଏ ପବନର ଇତସ୍ତତଃ ଦେହ
ଦୂର ଝାଉଁ ଜଙ୍ଗଲରେ ଥଣ୍ଡାହୋଇ ଆସେ ଛାଇ
ସମୁଦ୍ରର ଢେଉରେ ବା ନିରର୍ଥକ ଚେଷ୍ଟା ଆଉ ନଷ୍ଟ ଯେତେ
ଆୟୁଷର କୋହ
ମୁଁ ତୁମକୁ ଭଲପାଏ, ତୁମେ ଆଜି ଦୂରରେ ଦୂରରେ
ଏହି ଅସ୍ତ ଜହ୍ନ ଥିବ ତୁମର ଆକାଶ ଆଡ଼େ ହୁଏତ ବା ତୁମର ଆଖିରେ ।

"ଓହୋଃ ହୋ, ଗୁରୁପ୍ରସାଦ! ସମୁଦ୍ରସ୍ନାନ । ତୁମେ ସେ କଥା କହୁନ । ମୁଁ ତାଙ୍କର କିଛି କବିତା ପଢ଼ିଛି । ସେ ବହୁଦିନ ତଳେ, ପଢ଼ିଲା ବେଳେ । ଏସବୁ ପାଇଁ ଏବେ ଆଉ ସମୟ କାହିଁ ? କବିତା ଲେଖିବି, ପୁଣି ତାକୁ ଉତ୍ତାରିବି, କାହାକୁ ଗୁହାରି କରିବି, ଦିତିନି ଥର ମନେ ନ ପକେଇଲେ, କେହି ଛପେଇବେନି । ସେବେକାର ପରିବେଶ, ସେ ଭାବ ଆଉ କାହିଁ ?"

"ସବୁବେଳେ ପରିବେଶକୁ ଦୋଷ ଦେଲେ ହେବ କି ?"

"ତୁମେ ଠିକ୍ କହୁଛ । କିନ୍ତୁ କିଏ ନ ଚାହେଁ ତା ଲେଖା କେହି ପଢ଼ୁ, ତା ଅନ୍ତର୍ବେଦନାକୁ କେହି ବୁଝୁ । ତୁମେ ଆସିଲ ସତରେ କେତେ ଭଲଲାଗୁଛି । ତୁମ ଭଳି ଜଣେ ଦରଦୀ ମୋ କବିତାକୁ ବୁଝିଲା, ସେଇଥିରେ ମୋର ସାର୍ଥକତା ।"

"ତୁମେ କାହିଁକି ଭାବୁଛ, କେହି ବୁଝୁନି ? ଯିଏ ବୁଝୁନି, ହୁଏତ କେବେ ବୁଝିବ । କବିତାରେ ହଜିବାରେ ଯୋଉ ଆନନ୍ଦ, ତା ତୁମଠୁଁ କେହି ଛିଣ୍ଡେଇ ନେଇପାରନି ।" ଏତିକି କହି କାବ୍ୟନାୟିକା କବିଙ୍କ ମୁଣ୍ଡରେ ଟିକେ ହାତ ବୁଲେଇ ଦେଲେ । କବି ଅପଲକ ନୟନରେ ସେମିତି ସେଇ ଅନିନ୍ଦ୍ୟ ମୁହଁଟିକୁ ଚାହୁଁ ଚାହୁଁ ତାଙ୍କର ଆଖି ମୁଦି ହେଇଗଲା ।

ହଠାତ୍ କାହା ପାଟିରେ କବିଙ୍କର ନିଦ ଭାଙ୍ଗିଗଲା । କବିପତ୍ନୀ ଟାଉଁ ଟାଉଁ

କରି କହୁଥାନ୍ତି, "ଏ ମଣିଷର ଦିନ ନାହିଁ ରାତି ନାହିଁ ଖାଲି କବିତା କବିତା, ଦି ପଇସା ମିଳୁଥାନ୍ତା ଭଲ୍ ସେଥିରୁ । ରାତି ସାରା ଟେବୁଲ ପାଖରେ ବସିଥା । ସକାଳୁ ଉଠି କହିବେ — ମୋ ଅଣ୍ଟା କଅଣ ହଉଛି, ମୋ ପିଠି କଅଣ ହଉଛି । କେବେ ମୋତେ ଏ ଅଶାନ୍ତିରୁ ମୁକ୍ତି ମିଳିବ, ଆହେ ଚକାଡୋଳା ?"

ଘର ଝାଡ଼ୁ ଦେଉ ଦେଉ  କବିପତ୍ନୀ ଟେବୁଲ ବତି ଲିଭେଇ ଦେଲେ, ଝରକା ଖୋଲି ପରଦା ଆଡ଼େଇ ଦେଲେ । ସକାଳ ସଜ ଖରା କବିଙ୍କ ମୁହଁ ଆଖିରେ ଟିକେ ଫୋଡ଼ି ହେଇଗଲା । କବିଙ୍କ ପାଟିରୁ ଖାଲି ପଦଟେ ବାହାରିଲା: "ଓହୋଃ ।"

(ପ୍ରମେୟ, ୨୦୨୧)



# ମୁଁ ଯେବେ ମଧୁବାଳା ଥିଲି

(୧)

ଆମ ଆବାସିକ ଭବନରେ ପ୍ରାୟ ଚାଳିଶଟି ପରିବାର ରହୁଛନ୍ତି । ଆମ ସାମ୍ନା ବିଶାଳ ଆବାସିକରେ କିନ୍ତୁ ଦୁଇ ଶହରୁ ଅଧିକ ପରିବାର, ତା ଛଡ଼ା ପିଲାଙ୍କ ଖେଳିବା ବଗିଚା, ଔଷଧ ଦୋକାନ, ବିଉଟି ପାର୍ଲର, ଯୋଗ କେନ୍ଦ୍ର, ଶୀତତାପ ନିୟନ୍ତ୍ରିତ ସଉଦା ଦୋକାନ ଇତ୍ୟାଦି । ତେଣୁ ଆମେ ପ୍ରାୟ ଘର ଠିକଣା କହିବା ବେଳେ ସମସ୍ତଙ୍କୁ କହୁ – ସେ ଯୋଉ ବିଶାଳ ଆବାସିକ ଅଛି, ତା ସାମ୍ନା ଛୋଟିଆ ଆବାସିକଟି ହେଲା ଆମର । ହାଟବଜାର, ପୂଜାପର୍ବ, ପିଲାଙ୍କୁ ସ୍କୁଲରେ ଛଡ଼ା ଅଣା ଭିତରେ ଆମେ ବିଶାଳ ଆବାସିକର ସବୁ ଖବର ଜାଣିଥାଉ ।

ଆଜି ସନ୍ଧ୍ୟାରେ ଆମର ପଚପନି ପର୍ବ ମାନେ ପରଚର୍ଚ୍ଚା ପରନିନ୍ଦା ପର୍ବରେ ଆଲୋଚ୍ୟ ବିଷୟ ହେଲା – ଜଣେ ସମ୍ମୋହନ ବିଦ୍ୟା ବିଷାରଦ ଆସି ସେଠି ଡେରା ପକାଇଛନ୍ତି । ତାଙ୍କ ପାଖକୁ ଯିଏ ଯାଉଛି ତାକୁ ସେ କେବଳ ସମ୍ମୋହିତ କରୁନାହାନ୍ତି, ତା ଅବଚେତନ ମନରେ ଚାପି ରହିଥିବା ଦୁଃଖ ଆଉ କ୍ରୋଧକୁ ବି ବାହାର କରିଦେଉଛନ୍ତି । କେହି କେହି ତ ସମ୍ମୋହିତ ଅବସ୍ଥାରେ ପୂର୍ବଜନ୍ମର କଥା ମଧ ମନେ ପକାଇ ପାରୁଛନ୍ତି । କିଏ ପୂର୍ବ ତିନି ଜନ୍ମର କଥା ମନେ ପକାଇ ପାରୁଛି ତ ଆଉ କିଏ ସାତ ଜନ୍ମ ତଳ କଥା କାଲି ଭଳି ମନେ ପକାଇ ପାରୁଛି । ବିଷାରଦଙ୍କ ମତ ଯେ ବହୁ ରୋଗର କାରଣ କେବଳ ଏ ଜନ୍ମର ଭୁଲ୍ ଜୀବନଶୈଳୀ ବା ବଂଶାନୁଗତ ଦୋଷ ନୁହେଁ, ପୂର୍ବ ଜନ୍ମର ଅନେକ କର୍ମ ଓ ଅପକର୍ମ । ବେମାରିର ମୂଳ ଉପାଡ଼ିବାକୁ ହେଲେ ପୂର୍ବଜନ୍ମକୁ ଫେରିଯାଇ ଶକ୍ତ ମୂଳସବୁ ଉପାଡ଼ି ବାହାର କରି ଫିଙ୍ଗିଦେବାକୁ ପଡ଼ିବ । ଯେ ବିଷୟଟା ଆମକୁ ଏତେ ପ୍ରଭାବିତ କଲା ଯେ ଆମେ ସେଦିନ କିଏ କାହା ବାଳ ଗୋଲାପି

ରଙ୍ଗରେ ରଙ୍ଗେଇଲା, କିଏ କାହା ଶାଶୁଶ୍ୱଶୁରଙ୍କ ଆଗରେ ଏକୋଇଶିଆ ମାପର ଜାମା ପିନ୍ଧିଲା, କିଏ ନକଲି ସୁନାହାରକୁ ଅସଲି ସୁନା ବୋଲି ସ୍ୱାମୀ ବିବାହ ବାର୍ଷିକୀରେ ଦେଇଛନ୍ତି କହି ଫୁଲେଇ ହେଲା, କିଏ ନିଜ ବୟସକୁ ଏତେ କମ୍ କରି କହିଲା ଯେ ହିସାବ କଲେ ତାର କୋଡ଼ିଏ ବର୍ଷର ପୁଅ ତାକୁ ଆଠ ବର୍ଷ ହେଲା ବେଳେ ଜନ୍ମ ହେଇଥିବା ଜଣାଗଲା, କିଏ ଦିନଗତି ନଖାଇ ତିନିମାସ ଭିତରେ ଜଳହସ୍ତୀରୁ ଗଜହଂସୀରେ ରୂପାନ୍ତରିତ ହେଲା ଏସବୁ କଥା ଆଦୌ ଆଲୋଚନା କଲୁନାହୁଁ ।

ମୁଁ ଘରେ ଆସି ଯାଙ୍କୁ କହିଲି, "ଆସନ୍ତା ରବିବାର ସନ୍ଧ୍ୟାରେ ତୁମର କଅଣ କାମ ଅଛି କି ?"

"କାହିଁକି ?" ମୁହଁକୁ ଦୂରଦର୍ଶନ ପରଦାରୁ ନ ଆଣି ସେ ଉତ୍ତର ଦେଲେ ।

"ନାଁ, ମୋ ସାଙ୍ଗରେ ଟିକେ ଯାଇଥାଆନ୍ତ ।"

"କୋଉଠିକି ?"

ମୁଁ ଟିକେ ଚୁପ୍ ରହିକି କହିଲି, "ନାଇଁ, ଏଇ ବିଶାଳ ଆବାସିକକୁ । ଘଣ୍ଟେ ପାଇଁ ।"

ସେ ମୋତେ ଅନାଇଲେ ଯେମିତି ମୋ ସହ ତାଙ୍କର ସେଠିକି ଯିବା କଅଣ ଦରକାର ଜାଣିବାକୁ ଗୃହୁଁଥିଲେ ।

"ସେଠିକି ଜଣେ ସମ୍ମୋହନ ବିଷାରଦ ଆସିଛନ୍ତି । ସେ ଲୋକଙ୍କୁ ସମ୍ମୋହିତ କରି ଯେତେ ପୁରୁଣା ରୋଗ ହେଉ ଭଲ କରିଦେଉଛନ୍ତି ।"

"ହଁ ତ ତୁମକୁ କି ରୋଗ ହେଇଛି ?"

"ମୋ ମୁଣ୍ଡଟା ତ ସବୁବେଳେ କଅଣ ହଉଛି," ମୁଁ ଯନ୍ତ୍ରଣା ଜର୍ଜରିତ ସ୍ୱରରେ କହିଲି ।

"ଦି ମାସ ତଳେ ତ ସବୁ ପରୀକ୍ଷା ହେଇଥିଲା । ଡାକ୍ତର କହିଲେ ଅର୍ଦ୍ଧକପାଳି ଧରୁଛି, ରକ୍ତଗୃପ ତଳଉପର ହେଉଛି । ତିନିମାସ ପାଇଁ ଔଷଧ ଦେଇଛନ୍ତି । ଔଷଧ ଖାଇବାକୁ ଭୁଲିଯିବ । ପ୍ରାଣାୟମ କରିବାକୁ କହିଥିଲେ, କରୁଛ ? ସବୁଦିନେ ଅଧଘଣ୍ଟା ଧ୍ୟାନ କରିବାକୁ କହିଥିଲେ, କରୁଛ ? ଖାଲି ଯାଡୁସ୍ୟାଡୁ ଚିନ୍ତା ମୁଣ୍ଡରେ ପୂରେକି କହିବ କଅଣ ନା ମୋ ମୁଣ୍ଡ କଅଣ ହଉଛି ! ମାନୁଛି ଗତ ଦିବର୍ଷ ବହୁତ କଷ୍ଟ ସମୟ ଥିଲା । ତୁମେ ସେ ଅବସାଦରୁ ମୁକୁଳି

ପାରିନ । ହେଲେ ଯାହା ଘଟିଗଲା ଘଟିଗଲା, ତାକୁ ନେଇକି ଭାଳି ହେଲେ କଅଣ ହେବ ?"

"ଯଦି ଔଷଧରେ ସବୁ ଠିକ୍ ହେଇ ଯାଉଥାଆନ୍ତା, ତା ହେଲେ ଡାକ୍ତର ଧ୍ୟାନ କରିବାକୁ କାହିଁକି ପରାମର୍ଶ ଦେଲେ? ସମ୍ମୋହନ ଚିକିତ୍ସା ବି ତ ସେୟା କହୁଛି । ଗଭୀର ଧ୍ୟାନ ଅବସ୍ଥାରେ ଅବଚେତନରୁ ସବୁ ଦୁଃଶ୍ଚିନ୍ତା ଦୂର କରିହେବ । ଆଉ ଔଷଧ ଖାଇବା ଦରକାର ପଡିବନି ।"

"କେତେ ଟଙ୍କା ଏଥିରେ ଶ୍ରାଦ୍ଧ ହେବ ଟିକେ କୁହ ?"

"ଦଶ ହଜାର ଟଙ୍କା ।"

"କିଛି ଟଙ୍କା ଏମିତି ପାଣିକୁ ଫୋପାଡି ଦେଲେ ତୁମ ମୁଣ୍ଡ ଠିକ୍ ହେଇଯାଏ ।"

"ମୁଁ ଦିବର୍ଷ ହେଲାଣି ଗୋଟେ ଶାଢ଼ୀ କିଣିଛି ?"

"ମୁଁ ଶାଢ଼ୀ କିଣିବାକୁ ତୁମକୁ ମନା କରିଛି ? ତୁମେ ତ ନିଜେ କହିଲ ଦିବର୍ଷ ତ ବିକ୍ରିବଟା ବନ୍ଦ ଥିଲା । ପୁରୁଣା ମାଲ୍ ସବୁ ଖଲାସ କରିବେ । ମୁଁ ଏବେ କିଣିବିନି ।"

"ହଁ, ମୁଁ କହିଥିଲି । ସେଇଠୁ କଅଣ ହେଲା? ତୁମେ ଥରେ କହିଲ କି କିଣ ବୋଲି? କୋଉଟା ନୂଆ ଶାଢ଼ୀ ଆଉ କୋଉଟା ପୁରୁଣା କଅଣ ମୁଁ ଦେଖିକି ଜାଣିପାରିବିନି ? ତୁମେ କଅଣ ଟିକେ ବି ଉତ୍ସାହିତ କଲ କି ?"

"ହଁ, ତୁମେ ଶାଢ଼ୀ ଦେଖିକି ଖାଲି ଶାଢ଼ୀ କେତେ ପୁରୁଣା ତା ନୁହେଁ ସେ ଶାଢ଼ୀର ସୂତା ଯୋଉ ଏଣ୍ଡିପୋକରୁ ତିଆରି ତାର ଜନ୍ମମୁହୂର୍ତ୍ତ ବି ଜାଣିପାର!" ଇଏ ମୁରୁକି ହସି କହିଲେ ।

ମୋତେ ବି ହସ ମାଡୁଥିଲା, କିନ୍ତୁ ହସିଲେ କାମ ହେବନି । ମୁଁ କିଛି ସମୟ ଚୁପ୍ ରହି କହିଲି, "ତୁମେ ଗ୍ରହୁଁନ ମୁଁ ଭଲ ହେଇଯାଏ ।"

ଏଥର ଇଏ ବିରକ୍ତ ହେଇ କହିଲେ, "ନାଁ, ମୁଁ ଗ୍ରହୁଁନି! ବାଜେ କଥାଗୁଡ଼ା କହିବା ବନ୍ଦ କରିବ ? ଡାକ୍ତରଙ୍କ ପରାମର୍ଶ ତ ଆମେ ନେଉଛେ । ତୁମେ ସାତ ଦିନ ଧ୍ୟାନ ଶିବିରକୁ ଗଲ, ମୁଁ ଘର ଆଉ ପିଲା ସମ୍ଭାଳିଲି କି ନାହିଁ? ଯେତେବେଳେ ତୁମ ମୁଣ୍ଡକୁ ଯାହା ଆସିବ ତା କରିବ ନା କଅଣ? ତୁମକୁ ଯାହା ଭଲ ଲାଗେ କରୁନ । ଦି ବର୍ଷ ସିନା ସବୁ ବନ୍ଦ ଥିଲା । ଏବେ ଚିତ୍ର ପ୍ରଦର୍ଶନୀ କର, କର୍ମଶାଳା କର । ନାଇଁ ସେସବୁ କାହିଁକି କରିବ ?"

"ମୋ ଟଙ୍କା ମୁଁ ଯେମିତି ଖର୍ଚ୍ଚ କଲି..." ମୁଁ ମୁହଁ ଫୁଲେଇ କହିଲି ।

"ଟଙ୍କା ମୋର ହେଉ କି ତୁମର ହେଉ କି ଆଉ କାହାର ହେଉ, ଟଙ୍କା ଉଚିତ୍ କାମରେ ଲାଗିବା ଦରକାର । ବାଜେ ଖର୍ଚ୍ଚ ଗୋଟେ ଅପରାଧ ।" ଇଏ ନିଜର ଅତି ପ୍ରିୟ ବିଷୟରେ ଭାଷଣ ଆରମ୍ଭ କରିବାକୁ ଯାଉ ଯାଉ ମୁଁ କହିଲି, "ମୁଁ ଅପରାଧୀ ନୁହେଁ ଆଉ କଅଣ ? ଗୋଟେ ନୂଆ କଥା ଜାଣିବାକୁ କୌତୂହଳୀ ହେଲି । କିଛି ନ ହେଲେ ଗୋଟେ ନୂଆ କଥା ତ ଜାଣିବି । ଗୋଟେ ଅଭିଜ୍ଞତା ତ ହେବ । ନାଇଁଇଁଇଁ! ଛାଡ଼, ତୁମକୁ ବୁଝେଇକି କିଛି ଲାଭ ନାହିଁ । ତୁମ ଭଳି ଜଣକ ପାଖରେ ବର୍ଷ ବର୍ଷ ରହିଲେ ଯେକୌଣସି ମଣିଷର ମୁଣ୍ଡ କଅଣ ହେବ ହିଁ ହେବ ।"

"ଜାଣିଛ ତ ମୋ ସହ ରହିବାରୁ ମୁଣ୍ଡ କଅଣ ହଉଛି । ଆଉ ସେଠିକି ଯାଇ ଅଧିକ କଅଣ ଜାଣିବ ?" ଇଏ ଜୋର୍ ହସି କହିଲେ, "ମୋ ସହ କେମିତି ରହିବାକୁ ପଡ଼ିବନି ବରଂ ସେ ବାଟ ଖୋଜ ।"

ମୁଁ ଆଉ କିଛି ନ କହି ଚୁପ୍ ରହିଲି ଏବଂ ରବିବାର ସନ୍ଧ୍ୟା ପର୍ଯ୍ୟନ୍ତ ମାନେ ମଝିରେ ଦୁଇଦିନ ମଧ୍ୟ ଚୁପ୍ ରହିବି ବୋଲି ସ୍ଥିର କଲି । ଯାହା ଫଳରେ ରବିବାର ଇଏ ମୋ ସହ ଆଉ କୌଣସି ପ୍ରତିବାଦ ନ କରି ବାହାରିଲେ ।

"ଘଣ୍ଟେ ସମ୍ମୋହନ ଅବସ୍ଥାରେ ରହିବା ପରେ ମୁଁ କାଳେ ଭାରସାମ୍ୟ ରଖିପାରିବିନି, ସେଥିପାଇଁ ତୁମକୁ ସାଙ୍ଗରେ ଆଣିଛି । ତୁମେ ଅପେକ୍ଷା କରିକି ବସ ।"

ମୁଁ ଭିତରକୁ ପଶିଲି, କୋଠରିଟିରେ ଝାପସା ଆଲୁଅ । ପଚିଶ ଛବିଶ ବର୍ଷର ପିଲାଟେ ଉପରେ ଆଖି ପଡ଼ିଲା । ତା ଆଖି ଦୁଇଟି ଶାନ୍ତ, ମୁହଁରେ ଅଳ୍ପ ଅଳ୍ପ ଦାଢ଼ି, ଦକ୍ଷିଣୀ ସିନେମାର ନାୟକଙ୍କ ଭଳି ତାର ଗୋଟେ ଆକର୍ଷଣୀୟ ଉପସ୍ଥିତି ଥିଲା । ମୋତେ ଗୋଟେ ବିଶେଷ ଗଦି ଉପରେ ଶୋଇବାକୁ କହିଲା ଓ ମୋ ସହ କେହି ଆସିଛନ୍ତି କି ନାହିଁ ପଚାରିଲା । ମୁଁ ହଁ କହିଲି ।

"ମୁଁ ଆପଣଙ୍କୁ ଧୀରେ ଧୀରେ ଜାଗ୍ରତ ଅବସ୍ଥାରୁ ସୁପ୍ତ ଅବସ୍ଥାକୁ ନେଇଯିବି । ସେ ଗଭୀର ସମ୍ମୋହିତ ଅବସ୍ଥାରେ ସ୍ୱପ୍ନ ପରି ଆପଣଙ୍କ ମନକୁ ବହୁତ ଛବି ଆସିପାରେ । ସେସବୁ ମଧ୍ୟରୁ ହୁଏତ କିଛି ଇଙ୍ଗିତଧର୍ମୀ । ଆପଣ ଯେତେ ପାରିପାର୍ଶ୍ୱିକ ଅବସ୍ଥାକୁ ଅଜ୍ଞାତ କରି ଅବଚେତନରେ ରହିବେ, ଆପଣଙ୍କୁ ସେତେ ଉପଶମ ମିଳିବ । ମୁଁ ମଝିରେ ମଝିରେ ଆପଣଙ୍କୁ ପ୍ରଶ୍ନ ପଚାରିବି, ଆପଣ ଉତ୍ତର ଦେବେ ।"

ମୁଁ ହଉ କହିଲି ।

"ଏବେ ଆପଣ ଚେତନାର ଗଭୀରତମ ସ୍ତରକୁ ଯିବା ପରି ଅନୁଭବ କରନ୍ତୁ । ଆପଣଙ୍କର କେବେ କାହାକୁ ହତ୍ୟା କରିବାକୁ ମନ ହେଇଛି ?"

"କାହାକୁ କାହିଁକି ହତ୍ୟା କରିବାକୁ ମନ ହେବ? କି ଅଦ୍ଭୁତ ପ୍ରଶ୍ନ!"

"କେବେ କାହାକୁ ଜୀବନରୁ ମାରିବାକୁ ଇଚ୍ଛା ହେଇଛି କୁହନ୍ତୁ ।"

"ନାଁ, କାହାକୁ କେବେ ମାରିବାକୁ ଇଚ୍ଛା ହେଇନି ।"

"ଆପଣ କେବେ ଚାହିଁଛନ୍ତି କିଏ ମରିଯାଉ ?"

ପିଲାଟି ବାରମ୍ବାର ଏଇ ପ୍ରଶ୍ନଟି ପଚାରିଲାରୁ ମୋତେ ଭାରି ଚିଡ଼ା ମାଡ଼ିଲା । ମୁଁ କହିଲି, "ମୁଁ କଣ ଯମ, ମୋ ଚାହିଁବା ନ ଚାହିଁବାରେ କିଏ ମରିବ ?

"ମନ ଉପରେ ଟିକେ ଚାପ ଦିଅନ୍ତୁ । ଭାବି ଦେଖନ୍ତୁ, କିଏ ମରିଯିବା ଚାହୁଁଛନ୍ତି ? ବନ୍ଧୁବାନ୍ଧବ ଜ୍ଞାତିକୁଟୁମ୍ବ ଚିହ୍ନାଜଣାଙ୍କ ଭିତରେ ଏମିତି କେହି ନାହାନ୍ତି ଯାହାର ମରିବା ଆପଣ ଚାହୁଁଛନ୍ତି ?"

"ହଁ, ବନ୍ଧୁବାନ୍ଧବଙ୍କ ଭିତରୁ ବୃଦ୍ଧ ଜରଦଗବ ଜରଦଗବା ଗୋଟେ ଅଧେଙ୍କର ସ୍ୱାଭାବିକ ମୃତ୍ୟୁ ହେଲେ ମୁଁ ଆଦୌ ମନ ଦୁଃଖ କରିବିନି ।"

"ସେମାନେ କଅଣ କଲେ ?"

"ମୋର କେହି କିଛି କରିନାହାନ୍ତି । ଅତି କଦର୍ଯ୍ୟ ବିରକ୍ତିକର ଲୋକଗୁଡାକ । ଯେତେ ବୟସ ହେଲେ ବି ସେମାନଙ୍କର ଚେତନାର ଉତ୍ତରଣ ଘଟିବନି ।"

ସେ ଏମିତି ସବୁ ପ୍ରଶ୍ନ ପଚାରି ଚାଲିଲା; ପିଲାଦିନ କଥା, ସାଙ୍ଗସାଥି କଥା ଆଉ ଜୀବନ କେମିତି ଚାଲିଛି ପଚାରୁ ପଚାରୁ ସେ ହଠାତ୍ ପଚାରିଲା – "ମନେ ପକାନ୍ତୁ ଆପଣ ପୂର୍ବଜନ୍ମରେ କିଏ ଥିଲେ ?"

ଇଏ ଆମର ସକାଳୁ ସାରେଗାମା କାରଭାଁରେ ମଧୁବାଳା କିଶୋର କୁମାର ପୁରୁଣା ଗୀତ ଶୁଣୁଥିଲେ । ସେଥିପାଇଁ କି କଅଣ ପାଇଁ କେଜାଣି ସେଇ ମୁହୂର୍ତ୍ତରେ ମୋ ମନରେ ମଧୁବାଳାର ଛବି ନାଚି ଉଠିଲା । ମନ ଭିତରଟା ଏକାବେଳେକେ ମଧୁବାଳା ମଧୁବାଳା ହେଇଗଲା । ମୁଁ ଗୋଟେ ମଜାରେ କହିଲି—"ମଧୁବାଳା ଥିଲି ।"

"ଆହୁରି ଭଲରେ ମନେ ପକାନ୍ତୁ ?"

"ମନେ ପକାଇ କହୁଛି ପରା ମଧୁବାଳା ଥିଲି ।"

"ମନେ ପକାନ୍ତୁ କଅଣ କରୁଥିଲେ ?"

"ଭଲ ଆଉ, ଏଇଟା ଗୋଟେ ପଚ୍ଚରିବା କଥା ? ଗାଉଥିଲି, ନାଚୁଥିଲି, ଅଭିନୟ କରୁଥିଲି । ଆଉ କଅଣ କରୁଥିଲି ?"

"ଆଚ୍ଛା, ତାହେଲେ ଆପଣ ଆର ଜନ୍ମରେ କିଏ ହେଇ ଜନ୍ମ ହେବାକୁ ଚ୍ଚହିଁବେ ?"

"ପୁଣି ଆଉ ଗୋଟେ ଜନ୍ମ ? ଭ୍ଚବିଲେ ମୋ ମୁଣ୍ଡ କଅଣ ହେଇଯାଉଛି । ସ୍ନେହ ମମତାର ମଳିଚମ ତଳେ ଯୋଉ ସ୍ୱାର୍ଥପରତା, ଯୋଉ ଅସୂୟା ହୀନିମାନିଆ ଭ୍ଚବ, ମଣିଷ କେମିତି ନିଜ ଦାୟିତ୍ୱ ସାରି ଏଠୁଁ ଗଲେ ବି କଅଣ ଶାନ୍ତି ନାହିଁ ? ପୁଣି ଆଉ ଗୋଟେ ଜନ୍ମ !"

ଏଥର ପିଲାଟି ମୋ ମୁଣ୍ଡରେ ତିନିଥର ହାତ ବୁଲାଇ ଆଣି କହିଲା – "ଆପଣ ଧୀରେ ଧୀରେ ସ୍ୱାଭ୍ଚବିକ ଅବସ୍ଥାକୁ ଆସନ୍ତୁ, ଆଖି ଖୋଲନ୍ତୁ ।"

ମୁଁ ଆଖି ଖୋଲି ଉଠି ବସିଲି ଆଉ ସାଙ୍ଗେ ସାଙ୍ଗେ ପଚ୍ଚରିଲି, "ଆଚ୍ଛା, ମୁଁ ପୂର୍ବଜନ୍ମରେ ମଧୁବାଳା ଥିବା କଅଣ ଅସମ୍ଭବ ?"

"ଆଦୌ ଅସମ୍ଭବ ନୁହେଁ," ପିଲାଟି ସ୍ମିତ ହସି କହିଲା, "ଆପଣଙ୍କ ସହ ଯିଏ ଆସିଛନ୍ତି, ତାଙ୍କୁ ଟିକେ ଭିତରକୁ ପଠାନ୍ତୁ । କଥା ଅଛି ।"

ମୁଁ ୟାଙ୍କୁ ଭିତରକୁ ଯିବାକୁ କହି ବାହାରେ ଅପେକ୍ଷା କଲି । ପାଞ୍ଚ ମିନିଟ୍ ଖଣ୍ଡେ ପରେ ଇଏ ବାହାରକୁ ଆସିଲେ । ମୁଁ ପଚ୍ଚରିଲି, "କଅଣ କହିଲା ?"

"କହିଲା ତୁମେ ଅବସାଦରେ ଅଛ । ଆଉ ଚ୍ଚରି ପାଞ୍ଚ ଥର ଆସିଲେ ତୁମକୁ ଉପକାର ମିଳିବ ।" ଇଏ ମୋ ଗୋଡ଼ ଟାଣିଲା ଭଳି କହିଲେ, "ଆସ, ଆସ, ତୁମର ବହୁତ ଅଭିଜ୍ଞତା ହେବ ।"

"ଆଉ ଆସିବା ଦରକାର ନାହିଁ ମ । ମୁଁ ଯାହା ଜାଣିବାକୁ ଚ୍ଚହୁଁଥିଲି ଜାଣିଗଲି ।"

"କଅଣ ?"

"ମୁଁ ପା ପୂର୍ବଜନ୍ମରେ ମଧୁବାଳା ଥିଲି," ମୁଁ ଦୁଷ୍ଟ ହସଟେ ହସି କହିଲି ।

"ଓଃ, ତାହେଲେ ମୁଁ ନିଶ୍ଚୟ କିଶୋର କୁମାର ଥିବି!" ଇଏ ହସି ହସି କହିଲେ ।

"ମାନେ ମୁଁ ମରିଗଲେ ତୁମେ ଆଉ ଦିଟା ବାହା ହେବ?" ମୁଁ ଆଖି ବଡ଼ ବଡ଼ କରି ପଚାରିଲି ।

ସେ ଆହୁରି ଜୋର୍ ହସିବାକୁ ଲାଗିଲେ ।

ମୁଁ ମୁହଁ ଫୁଲେଇ ମୁଣ୍ଡରେ ଦୁଇହାତ ଚାପି କହିଲି, "ମୋ ମୁଣ୍ଡଟା କଅଣ ହେଇଯାଉଛି ।"

(୨)

"ମାଆ କାଇଁ? କୋଠରି ଅନ୍ଧାର କରି ସନ୍ଧ୍ୟା ବେଳଟାରେ କାହିଁକି ଶୋଇଛି?" ଘର ଭିତରକୁ ପଶୁ ପଶୁ ଇଏ ଡୁଡୁଲକୁ ପଚାରିବାର ମୁଁ ଶୁଣିଲି ।

"ତା ମୁଣ୍ଡ କଅଣ ହଉଛି । ସେ ଶୋଇଛି ।"

"ଆସଗୋ । ମୋ ପାଖକୁ ଆସ । ଆଜି ମୋ ଦେହ ମୁଣ୍ଡ କଅଣ ହେଇଯାଉଛି?"

"ଔଷଧ ଖାଇବାକୁ ପୁଣି ଭୁଲିଗଲ?" ଇଏ ଆସି ଜାମା ବଦଳଉ ବଦଳଉ ପଚାରିଲେ ।

"ନାଁଇ ମ । ତୁମେ ଧୁଆଧୁଇ ହେଇକି ଆସିକି ଟିକେ ମୋ ପାଖରେ ବସ । କହୁଛି । ଫ୍ଲାସ୍କରେ ଚାହା ଅଛି । ସିମେଇ ଉପମା କରିଥିଲି, ଖାଇଦିଅ ।"

ଇଏ କାମସାରି ଚାହା କପେ ଧରି ଆସି ମୋ ପାଖରେ ବସିଲେ । କୋଠରିଟା ଅନ୍ଧାର କରି ମୁଁ ଶୋଇଥିଲି, କିନ୍ତୁ ଆର ଘରୁ ହାଲୁକା ଆଲୁଅ ଆସୁଥିଲା ।

"କଅଣ ହେଲା?" ଇଏ ମୋ ମୁଣ୍ଡ ଆଉଁସି ଦେଇ ପଚାରିଲେ ।

"ଆଜି ଡୁଡୁଲକୁ କରାଟେ କ୍ଲାସରୁ ଆଣିବାକୁ ଯାଇଥିଲି । ସେଠି ବଡ଼ସାନ ପିଲାମାନେ କରାଟେ ଅଭ୍ୟାସ କରୁଥିଲେ । ଦେଖିକି ମୋତେ ଭାରି ଭଲ ଲାଗିଲା, ଯେମିତି ମୋ ଭିତରେ ଅଫୁରନ୍ତ ଶକ୍ତି ଉଦଗୀରଣ ହେଲା । ମୋର ବି ଇଚ୍ଛା ହେଲା ମୁଁ ବି କରାଟେ ଶିଖନ୍ତି, ଉଡ଼ିଉଡ଼ି ମାରନ୍ତି ।"

"ମାନେ ତୁମେ ସେଠି...?"

"ସେଠି ମୋତେ କିଏ ମାଗଣାରେ ଶିଖେଇବ ଯେ? ନାଁ ଲେଖେଇବାକୁ ପଡ଼ିବ, କେତେ କଥା ଅଛି ନା । ଶୁଣ ତୁମେ । ମୁଁ ଘରକୁ ଆସିଲା ପରେ ଡୁଡୁଲକୁ କହିଲି— ମୋତେ ଶିଖା । ସେ ମୋତେ ହାତ ଆଗକୁ କେମିତି ବଢ଼େଇବ, କେମିତି ଗୋଡ଼ ପଛକୁ କରିବ ଦେଖେଇଲା । ସେ ଧୀରେ ଧୀରେ କରିକି ଦେଖେଇଲା, ମୋତେ ଭଲ ଲାଗିଲାନି । ମୁଁ କହିଲି—ଯେତେବେଳେ ତୁ ମୋତେ ଶିଖଉଛୁ, ସେତେବେଳେ ତୁ ମୋ ମାଷ୍ଟର । ମାଷ୍ଟର ଭଳିଆ ଶିଖା । ସେଇଠୁ ସେ ଉଡ଼ି ଉଡ଼ି ମୋ ପେଟକୁ ଗୋଟେ ମାଇଲା । ସେତିକିବେଳୁ ତ ମୋ ଅଣ୍ଟାପିଠି କଅଣ ହେଇଯାଉଛି । ପଞ୍ଜରା ଭିତରେ କଅଣ ଗୋଟେ ଅଟକିଗଲା ଭଳି ଲାଗୁଚି । ମୁଣ୍ଡଟା ବୁଲଉଛି, ଉଠେଇ ପାରୁନି । ଆମ ଡୁଡୁଲଟା ଏମିତି ଧଡ଼ିଆ ଦେଖାଯାଉଛି ସିନା, ହେଲେ ପ୍ରବଳ ପରାକ୍ରମୀ ମ । ମୁଁ ଆଜି ଜାଣିଲି ।"

"ଆଚ୍ଛା, ତୁମ ମୁଣ୍ଡକୁ ଏମିତି ବୁଦ୍ଧି ଜୁଟେ କେମିତି କୁହ ତ?"

"ଏଥିରେ କି ବୁଦ୍ଧି ଦରକାର ଯେ? ସେମାନେ ସଫା ଧୋବ ଫରଫର କରାଟେ ପୋଷାକ ପିନ୍ଧି କି ସୁନ୍ଦର ଅଭ୍ୟାସ କରୁଥିଲେ । ଦେଖିକି ଯୋଉ ପାଓ୍ୱାରଫୁଲ୍ ଲାଗିଲା । ଏତେ ଔଷଧ ଖାଉଛି, ଭାବିଲି ଯାକୁ ଅଭ୍ୟାସ କଲେ ଅବସାଦ ଦୂର ହେଇଯିବ । ଔଷଧ ଖାଇବାରୁ ମୁକ୍ତି ମିଳିବ ।"

"ମନବୋଧ ହେଲା?" ଇଏ ପଚାରିଲେ, "ନା ଆଉ ନୂଆ କିଛି ଚେଷ୍ଟା କରିବାର ଅଛି? ଗତ ସପ୍ତାହରେ ମଧୁବାଳା, ଯେ ସପ୍ତାହରେ କରାଟେ, ଯା ପରେ କଅଣ?"

"ଓଃ, ମଧୁବାଳା କଥା ତୁମକୁ କହିନି ମ । ଆମ ପରଚର୍ଚ୍ଚା ପରନିନ୍ଦା ପର୍ବ ବେଳେ ମୁଁ ବିଶାଳକୁ ସେ ସମ୍ମୋହନ ବିଶାରଦ ପାଖକୁ ଯିବା କଥା କହିଲି । ସେଠି ମୁଁ ପୂର୍ବଜନ୍ମରେ ମଧୁବାଳା ଥିଲି ବୋଲି କହିବା କଥା କହିଛି କି ନାହିଁ, ରଶ୍ମୀ ଭାଉଜ ତ ପୂରା ଗଛଗଛ ହେଇଗଲେ । ଧର ମୁଁ ପୂର୍ବଜନ୍ମରେ ମଧୁବାଳା ଥିଲି, ତା ବୋଲି ଜଣକର ଦେହ ସହିବନି?"

ଇଏ ହୋ ହୋ ହେଇ ହସିଲେ ।

"ତାହେଲେ ମାଡ଼ଗୋଳ ଲାଗିଲା କି ନାହିଁ? କିଏ ପୂର୍ବ ଜନ୍ମରେ ମଧୁବାଳା ଥିଲା ଠିକ୍ ହେଲା?" ଇଏ ପଚାରିଲେ ।

"ରଶ୍ମୀ ଭାଉଜ କଅଣ ଆଉ କାହାକୁ କିଛି କୁହେଇ ଦେଲେ? ଖାଲି ତ କହିଗଲିଲେ – ମୁଁ କଲେଜରେ ପଢ଼ିଲା ବେଳେ ମୋତେ ସମସ୍ତେ ମଧୁବାଳା ଡ଼ାକୁଥିଲେ । ଥରେ ଆମ କଲେଜରେ "ଚଲତି କା ନାମ୍ ଗାଡ଼ି" ସିନେମା ନାଟକ ରୂପେ ମଞ୍ଚସ୍ଥ ହେଇଥିଲା । ସେଥିରେ ମୁଁ ମଧୁବାଳାର ରୋଲ କରିଥିଲି । ସେଇ ନାଟକ ଦେଖି ମୋ ପାଇଁ ଆଠଟା ବାହାଘର ପ୍ରସ୍ତାବ ଆସିଥିଲା ।"

"ବାଃ!"

"ଅପର୍ଣ୍ଣା କହିଲା ସେ ମଧୁବାଳା ଗୀତ ଗାଇକି କେତେ ଥର ଅନ୍ତାକ୍ଷରୀରେ ପୁରସ୍କାର ପାଇଛି । ତା ସ୍ୱର କାଳେ ପୂରା ମଧୁବାଳା ସ୍ୱର ସହ ମିଶେ । ଆଉ ମଧୁ କହିଲା ପ୍ରମାଣପତ୍ରରେ ତାର ପୂରା ନାମ ମଧୁବାଳା । ଆମର କିଏ ଆଉ ମଧୁବାଳା ନୁହେଁ ଯେ? ଏଥର ଶେଷ ରବିବାର ପଡ଼ୋଶୀ ମିଳନରେ "ମଧୁବାଳା ସନ୍ଧ୍ୟା" ହେବ । ଆମେ ଲେଡିଜମାନେ ସମସ୍ତେ ଗୋଟେ ଗୋଟେ ମଧୁବାଳା ଗୀତରେ ଅଭିନୟ କରିବୁ । କାଲି ଖରାବେଳୁ ଅଭ୍ୟାସ ଆରମ୍ଭ ହେବ ।"

"ବାଃ ବଢ଼ିଆ! ଖରାବେଳଟା ତାହେଲେ ତୁମର ସୁରୁଖୁରୁରେ କଟିଯିବ । ଘ୍ୟାଡୁସ୍ୟାଡୁ ଚିନ୍ତା କରି ମୁଣ୍ଡକୁ ଧରି ବସିବନି ।"

"ତୁମକୁ ବି ମୋ ସହ ଅଭିନୟ କରିବାକୁ ପଡିବ ।  ଆଚ୍ଛା, କୁହ ତ କୋଉ ଗୀତଟା ଆମେ ଦିଜଣ କଲେ ଭଲ ହେବ?"

"ମୋତେ ସେସବୁରେ ପଶାନା । ମୋ ଦ୍ୱାରା ହବନି ।"

"ବେହେରା ମଉସାଙ୍କୁ କେତେ ବର୍ଷ ଜାଣ? କୋଉ କାଳୁ ଅବସର ନେଲେଣି । ଆଇୟେ ମେହେରବାନ୍ ଗୀତରେ ମାଉସୀଙ୍କ ସହ ଅଭିନୟ କରିବେ, ଅଶୋକ କୁମାର ଅଂଶଟା କରିବେ ।"

"ୟେସବୁ ବି ଠିକ୍ ହେଇସାରିଛି ।"

"ଠିକ୍ ହେଇନି । ଏମିତି କଥା ପଡ଼ିଥିଲା । ଆମେ କହିଲୁ ବେହେରା ମଉସା ଅଶୋକ କୁମାର ଭଳି ଦେଖାଯାଆନ୍ତି । ମାଉସୀ କହିଲେ ତାଙ୍କ ବାହାଘର ଦିନ ବର ଦେଖିକି ବନ୍ଧୁବାନ୍ଧବ ସମସ୍ତେ ସେୟା କହିଥିଲେ । ଆମେ ସେଠୁ ତାଙ୍କୁ ଗୋଟେ ଗୀତରେ ଅଭିନୟ କରିବାକୁ ମତେଇଲୁ । ସେ ନାଇଁନାଇଁ କରିକି ରାଜିହେଇଛନ୍ତି । କାଲି ସବୁ ଠିକ୍ ହେବ, କିଏ କୋଉ ଗୀତ କରିବ । ତୁମର ମୋର ହାଲ କୈସା ହୈ ଜନାବ କା ଗୀତଟା କରିବା କି?"

"କହିଲି ପା ମୋତେ ସେସବୁରେ ପଶାନା । ଗୃଳିଶ ବର୍ଷରେ ଡିଆଁକୁଦା କରିବି ନି ଆଉ କଅଣ ?"

"ଗୃଳିଶ ଗୋଟେ ବର୍ଷ! ଆଚ୍ଛା, ଯଦି ଡିଆଁଡିଇଁ ନ କରିବ ତା ହେଲେ ତୁମେ ଅଶୋକ କୁମାର ଭଳି ବସିକି ମୁଚୁକି ମୁଚୁକି ହସ, ମୁଁ ଗାଇବି — ୟେ କ୍ୟା କର୍ ଡାଲା ତୁନେ ଦିଲ୍ ତେରା ହୋଗୟା..." ମୁଁ ୟୁଟ୍ୟୁବ ଖୋଲି ୟାଙ୍କୁ ସେ ଗୀତଟା ଦେଖେଇଲି ।

ମୁଣ୍ଡ ହଲେଇ ଇଏ କହିଲେ, "ନାଁ ମ, ମୋତେ ଲାଜ ମାଡ଼ିବ । ତୁମେ ଏକା ଯାହା କରିବ କର, ମୋତେ କୁହନା । ମୁଁ କେବେ ଏସବୁ କରିନି ।"

"ଆମେ ତ ନ ହେଲେ ଜଣେ ଜଣେ ପେଶାଦାର ଅଭିନେତ୍ରୀ! ତୁମେ ନା ନିହାତି ଗୋଟେ ବେରସିକ ଲୋକ । ଦିଲିପ କୁମାର ଭଳି ସଲିମ ହେଇକି ବସୁନ । ଖାଲି ବସିବା କଥା, କିଛି କରିବାର ନାହିଁ । ମୁଁ ଅନାରକଲି ହେଇକି ଜବ୍ ପ୍ୟାର୍ କିୟା ତୋ ଡ଼ରନା କ୍ୟା ନାଚିବି ।"

"ତୁମେ ସକାଳେ ଗ୍ତିରେ ଔଷଧ ନ ଖାଇଲେ ମୁଣ୍ଡ ଉଠେଇପାରୁନ । ଅନାରକଲି ଭଳି ନାଚୁ ନାଚୁ ମୁଣ୍ଡ ବୁଲେଇ ଅଚେତ ହେଇପଡ଼ିବ । ଫ୍ଲପ୍ ଶୋ ହେଇଯିବ ।" ଇଏ କହିଲେ, "ଗୋଟେ ଗୀତ ଦେଖ ଯୋଉଥିରେ ଘୂରି ଘୂରି ନାଚିବାକୁ ପଡ଼ିବନି । ତୁମେ ସେଇଟା କରିପାରିବ ।"

"ଔଷଧ ନ ଖାଇ ପୁରୁଣା ସାଲୱାର ପଞ୍ଜାବୀ ପିନ୍ଧି ବେକସ୍ ପେ କରମ୍ କିଜିଏ ଅଭିନୟ କରିଦେବି । ପୂର୍ା ଜୀବନ୍ତ ଅଭିନୟ ହେବ, ମୁହଁରେ ବେଦନା ଫୁଟି ଉଠିବ ।" ମୁଁ କହିଲି ।

ଇଏ ହସିଲେ, "ମଧୁବାଳାକୁ କିଏ କଷ୍ଟରେ ଦେଖିବାକୁ ଗ୍ହେଁ?"

"ମଧୁବାଳାକୁ ଲୋକେ କାହିଁକି ଦେଖନ୍ତି ?"

"କେଜାଣି? ତାର ସୌନ୍ଦର୍ଯ୍ୟ, ଠାଣି, ଅଭିନୟ... ଏ ସବୁ କିଛି ଭଲଲାଗେ । ସେଥିପାଇଁ ବୋଧେ ।" ଇଏ କହିଲେ ।

"ଏସବୁ ତ ଅନ୍ୟ ଅଭିନେତ୍ରୀଙ୍କର ବି ଅଛି ।"

"କିଛି ତ ଅଛି ଯାହା ସମସ୍ତଙ୍କୁ ମୁଗ୍ଧ କରେ, ଯାହା ଆଉ କାହା ପାଖରେ ନାହିଁ । ମୁଁ ଜାଣିନି । ତୁମେ ଗୋଟେ ସହଜ ଗୀତ ଦେଖି କର ।"

ମୁଁ ଟିକେ ଭ୍ବିଲି ଆଉ କହିଲି, "ଛାଡ଼, ସେକଥା । ମୋର ଯାହା କରିବା କଥା କରିବି । କାଲି ସନ୍ଧ୍ୟାବେଳେ ତୁମେ କେତେବେଳେ ଫେରିବ ?"

"କାହିଁକି ?"

"ନାଇଁ, ମୋର ଟିକେ କାମ ଥିଲା ।"

"କୁଆଡ଼େ ମଧୁବାଳା ହେବା ପାଇଁ ଜିନିଷ କିଣାକିଣି କରିବାକୁ ଯିବ ?"

"ନାଇଁ ଟିକେ ବିଶାଳ ଆବାସିକ ଯାଇଥାନ୍ତି, ସେ ଯୋଉ ସମ୍ମୋହନ..."

"ପୁଣି ? ପୁଣି ଦଶ ହଜାର ? କଅଣ ଲାଭ ହେଲା ଗତ ଥର ଯାଇକି ?"

"ନାଇଁ, ଏଥର ପାଞ୍ଚ ହଜାର । ସେଦିନ ସେଠୁ ଆସିବା ପରେ ମୋତେ ଗୋଟେ ଅଦ୍ଭୁତ ଶାନ୍ତି ମିଳିଲା । ସେଦିନ ରାତିରେ ଭଲ ନିଦ ହେଲା । କିଛି ଦୁଃଶ୍ଚିନ୍ତା ଆସିଲାନି ।"

"ଘରେ ଧ୍ୟାନ କର, ଶବାସନ କର । ଶାନ୍ତି ମିଳିବ ।"

"ମୋ ସାଙ୍ଗରେ ଆସିବାକୁ ତୁମକୁ କହୁନି । ତୁମେ ତୁତୁଲ ପାଖରେ ଘରେ ରୁହ । ମୁଁ ଏକା ଯିବି ।"

ଇଏ ମୁହଁ ଫୁଲେଇକି ମୋ ପାଖରୁ ଉଠିକି ପଳେଇଲେ ।

(୩)

ସମ୍ମୋହନ କୋଠରିରେ ମୁଁ ଆଉ ସେ ପିଲାଟି । ମୁଁ ଶୋଇ ରହି ପଚାରିଲି, "ସତରେ କଣ ପୂର୍ବଜନ୍ମ, ପରଜନ୍ମ, ଆତ୍ମା, ଏସବୁ ସତ ?"

"ଆପଣଙ୍କ ପାଇଁ ଏସବୁ ଗୋଟେ କୌତୁକ, ନୁହେଁ ?"

ମୁଁ ହସିକି କହିଲି, "ହଁ, ବୋଧେ ସେୟା ।"

"ଆପଣ ଏସବୁରେ କଣ ବିଶ୍ୱାସ କରନ୍ତି ?" ପିଲାଟି ପଚାରିଲା ଆଉ ମୋତେ ଆଖି ବନ୍ଦ କରିବାକୁ କହିଲା ।

"ଆମ ଶାସ୍ତ୍ରରେ କୁହାଯାଇଛି ଆତ୍ମାର ମୃତ୍ୟୁ ନାହିଁ । ମୃତ୍ୟୁ ପରେ ଆତ୍ମା ଅନ୍ୟ ଦେହ ଧରେ । ଯୋଉମାନେ ସବୁ ଆମ ଜୀବନରୁ ଚାଲିଗଲେ, ସେମାନେ କି ଦେହ ଧରିଲେ ? ଏମିତି ସବୁ ମୁଁ ଭାବେ ।"

"କିଛି କଥା ଆମର ଜ୍ଞାନାତୀତ, ତା ଆମ ପାଇଁ ଭଲ । ଆପଣଙ୍କ ମନଗହୀରର କଅଣ ଆପଣଙ୍କୁ ସବୁବେଳେ କଷ୍ଟ ଦଉଛି ? ଯୋଉମାନେ ଚାଲିଗଲେ... ?" ପିଲାଟି ମୋ ମୁଣ୍ଡ ଧୀରେ ଧୀରେ ଆଉଁସି ପଚାରିଲା ।

"କୁଆଡ଼େ ସବୁ ଗ୍ଲିଗଲେ...? କିଟିକିଟି ଅନ୍ଧାର ରାତି, ଗୋଡ଼ରୁ ମୁଣ୍ଡ ଧଳା ପିନ୍ଧି ଗୁଡ଼େ ଲୋକ ଶବଗୁଡ଼ାକୁ କେମିତି ନଉଥିଲେ । ଓଃ, କଅଣ ସବୁ ହେଇଗଲା..."

"ଆପଣ କୁହନ୍ତୁ, ମୁଁ ଶୁଣୁଛି ।" ପିଲାଟି କହିଲା ।

"କି ଦୁଃଖ, କି ନିଷ୍ଠୁର ସମୟ... ଅଥଚ ଦିଦିନ ପରେ ଲୋକେ ଭୁଲିଗଲେ, ଯେମିତି କିଛି ଘଟିନଥିଲା ।"

"ତା ହିଁ ସଂସାର..."

"ତା ହିଁ ଭାବି ମୋତେ ଆଶ୍ଚର୍ଯ୍ୟ ଲାଗେ, କଷ୍ଟ ବି ଲାଗେ..."

"ଯୋଉ ପ୍ରିୟ ଲୋକଙ୍କୁ ଆପଣ ହରାଇଛନ୍ତି, ସେମାନଙ୍କୁ କେବେ ସ୍ୱପ୍ନରେ ଦେଖିଛନ୍ତି ?"

"ହଁ, କେତେ ଥର..."

"ସେମାନେ ଆପଣଙ୍କ ପାଖରେ ଥିଲା ଭଳି ଅନୁଭବ ହୁଏ ?"

"ହଁ କେବେ କେବେ ହୁଏ, କେବେ କେବେ ହୁଏନି ।"

"ଯେତେବେଳେ ମନେ ପଡ଼ୁଛି, ମନେ ପକାନ୍ତୁ । କିନ୍ତୁ ସବୁବେଳେ ଝୁରି ହୁଅନ୍ତୁନି । ତା ସେମାନଙ୍କ ଆତ୍ମାର ଉତ୍ତରଣ ପାଇଁ ବି ଭଲ ନୁହେଁ । ଆଚ୍ଛା, କୁହନ୍ତୁ ତ ଆପଣଙ୍କ ପିଲାଦିନ ମନେ ଅଛି ?"

"ହଁ, ପିଲାଦିନ କିଏ ଭୁଲିପାରେ ?"

"ଆପଣଙ୍କ ପିଲାଦିନର ମୁହଁ ମନକୁ ଆଣନ୍ତୁ । ସେଇ ମୁହଁ ଉପରେ ମନକୁ ଏକାଗ୍ର କରନ୍ତୁ । ସେତେବେଳେ ଯେମିତି ଚିନ୍ତାଶୂନ୍ୟ ଥିଲେ ସେମିତି ପୁଣିଥରେ ହେଇଯାଇଛନ୍ତି ବୋଲି ଭାବନ୍ତୁ ।"

ପିଲାଟି କହିବା ଅନୁସାରେ ମୁଁ ମୋ ପିଲାଦିନର ମୁହଁ ମନକୁ ଆଣିଲି । କିଛି ସମୟ ପର୍ଯ୍ୟନ୍ତ ମୁଁ ଜାଗ୍ରତ ଥିଲି । ତାପରେ କଅଣ ହେଲା ମୁଁ ଜାଣିନି, ଘଣ୍ଟେ ଖଣ୍ଡେ ପରେ ମୁଁ ନିଦରୁ ଉଠିଲି ।

"ଏବେ କେମିତି ଲାଗୁଛି ?" ପିଲାଟି ପାଣି ଗ୍ଲାସଟେ ମୋ ହାତକୁ ବଢ଼େଇ ପଚାରିଲା ।

"ଭଲ ।"

ମୁଁ ଘରୁକୁ ଫେରିଲା ବେଳକୁ ଇଏ ଆଉ ତୁତୁଲ ବସିକି ଦୂରଦର୍ଶନରେ ଫୁଟବଲ ଦେଖୁଥିଲେ । ଅନେକ ଦିନ ପରେ ସେଦିନ ସାରା ରାତି ନିଘୋଡ଼ ନିଦରେ ଶୋଇଲି ।

(୪)

ମଧୁବାଳା ବିଶେଷ ସନ୍ଧ୍ୟା ପାଇଁ ଆମର ପ୍ରସ୍ତୁତି ଚାଲିଲା । ସେଥିପାଇଁ ପ୍ରତିଦିନ ଖରାବେଳେ ଆମେ ଅଭ୍ୟାସ କଲୁ । ଖାଲି ଯେ ନାଚଗୀତର ଅଭ୍ୟାସ ତା ନୁହେଁ । ଓଜନ କମାଇବା, ତ୍ୱଚାର ଯତ୍ନ ନେବା ବି ଆମେ ନିୟମିତ ଆରମ୍ଭ କରିଦେଲୁ । ଆମେ ସବୁଠୁଁ ସୁନ୍ଦର କେମିତି ଦିଶିବୁ ସେଇ ଚେଷ୍ଟାରେ କିଏ କଣ କରୁଛୁ ଅଭ୍ୟାସ ସମୟ ଛଡ଼ା ବାକି ସମୟତକ ଆଲୋଚନା କଲୁ । ଆମେ ନିଜେ ୟୁଟ୍ୟୁବରୁ ଦେଖି ଯାହା ଶିଖିଲୁ, ପରସ୍ପରର  ଭୁଲ୍ ଉପରେ ଟିପ୍ପଣୀ ଦେଲୁ । ପୁଣି ବିଶାଳ ଆବାସିକକୁ ନାଚ ଶିଖେଇବାକୁ ଆସୁଥିବା ନାଚ ମାଷ୍ଟରଙ୍କୁ ଅନୁରୋଧ କରିବାକୁ ସ୍ଥିର କଲୁ । ସେ ଆମକୁ କିଛି ସୂତ୍ର ବତେଇ ଦେଲେ ଆମର ଅଭିନୟ ଭଲ ହେବ ବୋଲି ଆଶା କଲୁ । ତାଙ୍କୁ ଅନୁରୋଧ କଲାରୁ ସେ ପାଞ୍ଚ ଥର ଆସିବାକୁ ଚାରି ହଜାର ଟଙ୍କାରେ ରାଜି ହେଲେ । ତାଙ୍କର ପରିଚିତ ଚିତ୍ରାଳୟରୁ କମ୍ ଟଙ୍କାରେ ଦରକାର ହେଲେ ବେଶପୋଷାକ, ଅଳଙ୍କାର ଭଡ଼ାରେ କରେଇ ଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସେ ଆସି ଆମକୁ ମୁଖଭଙ୍ଗୀ, ଚାଲିବାର, ନାଚିବାର କିଛି ସୂତ୍ର ବତାଇବାରୁ ଅଳ୍ପ ଦିନ ମଧ୍ୟରେ ଆମ ଅଭିନୟରେ ଉନ୍ନତି ଆମେ ନିଜେ ଅନୁଭବ କଲୁ । ଆମେ ସେଦିନ ସନ୍ଧ୍ୟାରେ କଅଣ ପିନ୍ଧିବୁ, ଆମର ପ୍ରସାଧନ, କାର୍ଯ୍ୟକ୍ରମ ସଂଯୋଜନା ଆଦି ପାଇଁ ସବୁ ଯୋଜନା ମିଶିକି କଲୁ । ସେଦିନ ରାତିରେ ଖାଇବା ବ୍ୟବସ୍ଥା ଦାୟିତ୍ୱ ଆମ ଆବାସିକର କାର୍ଯ୍ୟକାରୀ ସମିତି ନେଲା । ଶେଷରେ ସେଇ ସନ୍ଧ୍ୟା ଉପନୀତ ହେଲା ।

ପ୍ରଥମେ କାର୍ଯ୍ୟକ୍ରମର ସୂଚନା ଦେବାକୁ ଯାଇ ରଚନା, ଯିଏ କି ଆମ ସାମ୍ନା ଘରେ ରୁହେ, ବୟସ ତିରିଶ ଓ ଯିଏ ଗୋଟେ ସ୍କୁଲରେ ବିଜ୍ଞାନ ଶିକ୍ଷୟିତ୍ରୀ, କହିଲା, "ଆଜିର ମଧୁବାଳା ବିଶେଷ କାର୍ଯ୍ୟକ୍ରମକୁ ଆପଣମାନଙ୍କୁ ସ୍ୱାଗତ । ମଧୁବାଳା ଆମ ସ୍ୱପ୍ନର ନାୟିକା । ଅନିନ୍ଦ୍ୟ ସୁନ୍ଦରୀ ମଧୁବାଳା ଆମର କାମନାର ସାକାର ରୂପ । ଆଜି ଆମ ଆବାସିକର ଅପା, ଭାଉଜ, ମାଉସୀମାନେ ମଧୁବାଳାଙ୍କ ଅନେକ ରୂପକୁ ଆମ ଆଗରେ ଉପସ୍ଥାପିତ କରିବେ । ହେଲେ ତା ପୂର୍ବରୁ ମୁଁ ମଧୁବାଳାଙ୍କ ଜୀବନକୁ ସଂକ୍ଷେପରେ ଆପଣଙ୍କ ଆଗରେ କହିବାକୁ ଚାହୁଁଛି ।"

ସେ ଓ୍ୱିକିପିଡିଆ ଓ ଗୁଗୁଲରୁ ମଧୁବାଳାଙ୍କ ଉପରେ ସଂଗ୍ରହ କରିଥିବା ଜୀବନୀକୁ ନିଜସ୍ୱ ଢ଼ଙ୍ଗରେ ପରିବେଷଣ କଲା । ତା ବକ୍ତୃତା ଅପେକ୍ଷା କରିବା ଜାଗାରୁ ଆମକୁ ଶୁଭୁଥାଏ ।

"ମଧୁବାଳାଙ୍କ ହୃଦୟରେ ଭେଣ୍ଟ୍ରିକୁଲାର ସେପ୍ଟାଲ ଡିଫେକ୍ଟ ଥିଲା । ସେଥି ଯୋଗୁଁ ସେ ମାତ୍ର ଛତିଶ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ । ମୃତ୍ୟୁବେଳକୁ ସେ କିଶୋର କୁମାରଙ୍କ ବିବାହିତା ପତ୍ନୀ ଥିଲେ । କୁହାଯାଏ କିଶୋର କୁମାର ତାଙ୍କୁ ଦେଖିବାକୁ ଆସୁ ନଥିଲେ, କିନ୍ତୁ ତାଙ୍କ ଚିକିତ୍ସାର ଖର୍ଚ୍ଚ ବହନ କରିଥିଲେ । ଏତେ କମ୍ ବୟସ ମଧ୍ୟରେ ସେ ଖ୍ୟାତିର ଶିଖର ଛୁଇଁଥିଲେ । ଆଜିର ସନ୍ଧ୍ୟା ତାଙ୍କ ସ୍ମୃତିରେ..."

ଆମ ଆବାସିକର ପ୍ରାୟ ଶହେ ଦର୍ଶକ ତାଳି ମାରି ଉତ୍ସାହିତ କଲେ ।

"ସବାଆଗେ ମୁଁ ରଶ୍ମୀ ଭାଉଜଙ୍କୁ ଅନୁରୋଧ କରିବି ସେ ଆସି ନିଜ ପସନ୍ଦର ମଧୁବାଳା ଗୀତରେ ଅଭିନୟ କରିବେ ।"

ମଞ୍ଚ ଉପରେ ରଶ୍ମୀ ଭାଉଜ ପ୍ରବେଶ କଲେ । ଗୋଟେ ସୁସଜ୍ଜିତ ଚୌକିରେ ରଶ୍ମୀ ଭାଉଜଙ୍କ ସ୍ୱାମୀ ବିବେକ ବାବୁ ସଲିମ ବେଶରେ ବସିଲେ । "ଜବ ପ୍ୟାର କିଯା ତୋ ଡରନା କ୍ୟା" ଗୀତ ପଛରୁ ବାଜିବା ଆରମ୍ଭ ହେଲା । ଗୀତ ବଜାଇବା ଦାୟିତ୍ୱରେ ଅପର୍ଣ୍ଣା ଥିଲା । ରଶ୍ମୀ ଭାଉଜ ସେ ଗୀତର ତାଳେ ତାଳେ ନାଚିବା ଆରମ୍ଭ କଲେ । ଚିତ୍ରାଳୟରୁ ଅଣାଯାଇଥିବା ପୋଷାକ ଆଉ ତାଙ୍କ ମୁହଁର ପ୍ରସାଧନ ଫଳରେ ସେ ପୂରା ଅଲଗା ଦିଶୁଥିଲେ । ରଶ୍ମୀ ଭାଉଜଙ୍କର ଉଚ୍ଚତା ବି ଭଲ ଥିଲା । ନୃତ୍ୟଟି ଆକର୍ଷଣୀୟ ହେଲା । ଗୀତ ଶେଷ ହେବାରୁ ସମସ୍ତେ ତାଳି ମାରିଲେ ।

ତାଙ୍କ ପରେ ବେହେରା ମାଉସୀ ଓ ମଉସା "ଆଇୟେ ମେହେରବାନ୍" ଗୀତ ଅଭିନୟ ପରିବେଷଣ କଲେ । ଦର୍ଶକମାନଙ୍କର ହୁଇସିଲ ଆଉ ତାଳି ମାଡ଼ ଆରମ୍ଭରୁ ଶେଷ ଯାଏଁ ବନ୍ଦ ହେଲାନି ।

ତାପରେ ମୋ ନାଁ ଡ଼କା ହେଲା । ମୋ ସହ ନାଚିବାକୁ ମୁଁ ସସ୍ମିତାକୁ ସାଙ୍ଗ କରିଥିଲି । ସସ୍ମିତାର ପୁଅ ଆଉ ଡୁଡୁଲ ସ୍କୁଲରେ ଏକାଠି ପଢ଼ନ୍ତି । ଆମେ ଦିଜଣ ପିଲାଙ୍କୁ ସ୍କୁଲରେ ଆଣିବା ଛାଡ଼ିବା ସମୟରେ ପ୍ରାୟ ସୁଖଦୁଃଖ ହଉ । ଆମେ ଦିଜଣ "ଆଚ୍ଛା ଜୀ ମେଁ ହାରି ଅବ୍ ମାନ୍ ଜାଓ ନାଁ" ଗୀତ ଅଭିନୟ କଲୁ । ସସ୍ମିତା ଦେବାନନ୍ଦ ଷ୍ଟାଇଲର ଗୋଟେ ଓ୍ୱିଗ୍ ପିନ୍ଧିଥିଲା । ଆମ ଗୀତ ବେଳେ ବି ତାଳିମାଡ଼ ହେଲା ।

ଅପର୍ଣ୍ଣା ମଧୁବାଳା ଉପରେ ଚିତ୍ରିତ ଗୀତ "ଇକ୍ ପରଦେଶୀ ମେରା ଦିଲ୍ ଲେଗୟା" ଗାଇଲା । ତାପରେ ମଧୁ "ମୋହେ ପନଘଟମେଁ ନନ୍ଦଲାଲ ଛେଡ଼ ଗୟୋ ରେ" ନାଚିଲା । ସେ ପିଲାଦିନେ କଥକ ନାଚ ଶିଖୁଥିଲା, ତାର ନୃତ୍ୟ ପରିବେଷଣ ସୁନ୍ଦର ହେଲା । ଦର୍ଶକମାନଙ୍କ କରତାଳିରେ କାର୍ଯ୍ୟକ୍ରମ ଶେଷ ହେଲା । ଆମକୁ ସମସ୍ତେ ପ୍ରଶଂସା ବି କଲେ । ଆଉ ଏମିତି କାର୍ଯ୍ୟକ୍ରମ ପ୍ରତିମାସରେ ହେବା ଦରକାର ବୋଲି ପ୍ରସ୍ତାବ ବି ଦେଲେ ।

ଆମେ ଖିଆପିଆ ସାରି ମହାଆନନ୍ଦରେ ଘରୁକୁ ଫେରିଲୁ ।

ଇଏ ଆମର କହିଲେ, "ବଢ଼ିଆ ହେଲା ମ! ବେହେରା ମଉସା ମାଉସୀ ତ ଜମେଇ ଦେଲେ । ମୁଁ ଆଶା କରି ନଥିଲି ଏତେ ସୁନ୍ଦର ହେବ ବୋଲି ।"

"ସତରେ ? ମୁଁ କେମିତି ଲାଗୁଥିଲି ?"

ଇଏ ଦିଆଖି ବୁଜି ମୁଣ୍ଡ ହଲେଇ କହିଲେ, "ତୃପ୍ତିମୟୀ! ମଝିରେ ମଝିରେ ଏମିତି କର ।"

"ତୁମେ ତ ପୂରା ମୁଗ୍ଧ ହେଇଯାଇଛ," ମୁଁ ଆଖି ନଚେଇ ନଚେଇ କହିଲି, "ମୋ କଥା ଶୁଣିଲନି । ସସ୍ମିତା ବଦଳରେ ତୁମେ ମୋ ସହ ଥିଲେ କି ମସ୍ତ ହେଇଥାଆନ୍ତା କହିଲ ?"

"ହୁଁ ।" ଇଏ ସମ୍ମତି ଜଣାଇ କହିଲେ ।

ସେଦିନ ରାତିରେ ତୁତୁଲ ଶୋଇଲା ପରେ ଆମେ ଅନେକ ସମୟ ଯାଏ ସେ ସନ୍ଧ୍ୟାର ଫଟୋ ଆଉ ଭିଡିଓ ଦେଖିଲୁ । ମୁଁ ଭାବି ଭାବି ୟାଙ୍କୁ ପଚାରିଲି, "ଆଚ୍ଛା, ମଧୁବାଳା ଖୁସି ଥିଲା ?"

"କେଜାଣି, କିଏ କହିପାରିବ ?" ଇଏ ଫଟୋ ଦେଖୁ ଦେଖୁ କହିଲେ, "ଆର ଥରକୁ ମୁଁ ବି ତୁମ ସହ ଅଭିନୟ କରିବି । ଆମେ କୋଉ ଗୀତଟାରେ ଅଭିନୟ କରିବା କୁହ ତ ? "ହାଲ କୈସା ହେ ଜନାବ୍ କା" ? "ଗୁନ୍ଦ ରାତ୍ ତୁମ୍ ହୋ ସାଥ୍" ? ଏଇ, ତୁମ ଭିଡିଓ ଦେଖ..." ୟା କହି ଇଏ ମୋ ଗୀତ ଅଭିନୟ ଦେଖିବାକୁ ଲାଗିଲେ ।

(ଏହି ଗପର ପ୍ରଥମ ଅଂଶଟି ଦୈନିକ ସମ୍ବାଦ "ପ୍ରମେୟ"ର ରବିବାସରୀୟ ସାହିତ୍ୟ ଫର୍ଦ୍ଦରେ ୨୦୨୨ ମସିହାରେ ପ୍ରକାଶିତ)



# ତିନି ବନ୍ଧୁ

ଖଣ୍ଡଗିରି ତଳକୁ ଘାଟିକିଆ ଛକ ଟପି ଯୋଉ ଗଛଗହଳ ରାସ୍ତାଟା କଳିଙ୍ଗ ଷ୍ଟୁଡ଼ିଓ ଆଡ଼କୁ ଗଡ଼ିଯାଇଛି, ତା କଡ଼ରେ — "ଅସଲି ଓଡ଼ିଆ ଜଳଖିଆ ଦୋକାନ"। ଟିକେ ଛାଡ଼ି ରାଧାଚୂଡ଼ା ଓ ଜରୁଲ ଗଛର ଭିଡ଼। ଦୋକାନର ମାଲିକ ଘନ ଭାଇର ଘାଟିକିଆ ଡେଇଁଲେ ଗାଁ। ଜମିବାଡ଼ି ଅଛି, ହେଲେ ଭଲମନ୍ଦ ରାନ୍ଧିବା ତାର ସଉକ। ତା ହାତ ତିଆରି  ପଣସକଠା ଚପ୍, ବାଇଗଣି, ପକୁଡ଼ି, ମଣ୍ଡା ଯିଏ ଥରେ ଖାଇଛି, ଭୁଲିନି। ଦୋକାନରେ ବେଶି ଗହଳି ଚହଳି ହୁଏନି ସତ, କିନ୍ତୁ କିଛି ଖାଦ୍ୟରସିକ ସେଠି ବରାବର ଆସି ପହଞ୍ଚନ୍ତି। ସେଦିନ ଅପରାହ୍ଣରେ ଆସି ପହଞ୍ଚିଲେ ବରୁଣ ଓ ସୌମ୍ୟ।

"କେତେ ଦିନ ପରେ ଆଜ୍ଞା," ଘନ ଭାଇ ସେ ଦୁହିଁଙ୍କୁ ସଂଖୋଳିଲେ ଓ ସେ ଦିହେଁ ପରିଚିତ ହସ ହସି ପାଖରେ ପଡ଼ିଥିବା ବେଞ୍ଚରେ ବସିଲେ।

ସବୁ ଥର ପରି ଟହଲିଆ ତିନିଟା ଥାଳିରେ ପଣସ ଚପ୍ ଓ ଧନିଆ ପତ୍ର ଚଟଣି ଥୋଇ ଦେଇଗଲା। ଦୁଇଜଣଙ୍କ ପାଇଁ ତିନିଟା ଥାଳି? ବ୍ୟାପାରଟା ହେଲା ପ୍ରାୟ ବର୍ଷେ ତଳ ପର୍ଯ୍ୟନ୍ତ ସେମାନେ ତିନିଜଣ ବନ୍ଧୁ ମାନେ ବରୁଣ, ସୌମ୍ୟ ଓ ଲଳିତ ସବୁବେଳେ ଏକାଠି ଆସୁଥିଲେ। ଯଦି କୌଣସି କାରଣରୁ ଜଣେ ଆସି ପାରୁନଥିଲା, ତଥାପି ତା ପାଇଁ ଥାଳିଏ ଜଳଖିଆ ସଜା ହେଉଥିଲା। ତାକୁ ଭ୍ରାମ୍ୟଭାଷରେ କୁହାଯାଉଥିଲା ବିଶେଷ ଜଳଖିଆଟା କଅଣ, ସେ ଥିଲେ କେତେ ଜମିଥାଆନ୍ତା ଏବଂ ତା ପରେ ଦୁଇ ବନ୍ଧୁ ତିନିଟା ଥାଳିକୁ ସଫା କରୁଥିଲେ।

ସୌମ୍ୟ ଚୁପ୍ କରି ବରୁଣକୁ କହିଲା, "ଏ ଅଲକ୍ଷଣା ଗଲା, ଆମେ ତା ନାଁରେ ଖାଇକି ଚର୍ବି ବଢ଼େଇବା କଥା।" ଆଉ ବଡ଼ ପାଟିରେ କହିଲା, "ଘନ ଭାଇ, ଦରଦାମ୍ ଯାହା ବଢୁଛି, ଗୋଟେ ଥାଳି ନେଇଯାଅ।"

"ନାଁ ମ," ଗରମ ତେଲରେ ବନ୍ଧାକୋବି ପକୁଡ଼ି ଛାଡ଼ୁ ଛାଡ଼ୁ ଘନ ଭାଇ କହିଲା, "ଅନ୍ୟମାନଙ୍କ ପାଇଁ ନୂଆ ଦର, ଆପଣଙ୍କ ପାଇଁ ସେଇ ପୁରୁଣା ଦାମ୍ । ଆପଣ ତିନିଜଣଙ୍କ ବନ୍ଧୁତା କଥା ଭାବିଲେ ମନଟା ଖୁସି ହେଇଯାଏ!"

ବରୁଣ ଧୀରେ ସୌମ୍ୟକୁ କହିଲା, "ହଁ, ବଡ଼ ହାକିମ ବାବୁ ହେଇଛି । ଆମକୁ ଆଉ କାହିଁକି ଚିହ୍ନିବ, ମଳିମୁଣ୍ଡିଆ ଆମେ । ଏଇ ପଣସ ଚପ୍ ଖାଇବାକୁ ଭାରି ରଙ୍ଗ ହଉଥିଲା ।"

"କିଏ ଭାବିଥିଲା ସେ ନିଉଛଣାଟା କଲିଜା ଫଟେଇବ!"

"ତା ବାପାବୋଉ ବେଳକୁ ଆମେ ଠିଆ ହେଲେ । ତା ପିଲାଛୁଆଙ୍କ ବେଳକୁ ଆମେ ଦଉଡ଼ିଲେ । ଆଉ ଏବେ ଚିହ୍ନିବାକୁ କୁନ୍ଥକୁନ୍ଥ ହେଉଛି । ହଁ, ନାମକରା ହାକିମ ହେଇଛି । ଗୁରିଆଡ଼େ ଭାରି ଖାତିର । ଯିଏ ଯଶଖ୍ୟାତି ଗ୍ରହେଁ ତା ପାଖରେ ବନ୍ଧୁତା, ସଂପର୍କର ଅର୍ଥ କଅଣ? ତାର ମୂଳ କଥା ହେଲା — ମୋତେ ଦେଖ, ମୋ କଥା ଭାବ, ମୋ ପଛରେ ଆସ, ମୋ କଥା ଶୁଣ, ମହାଦେବଙ୍କୁ ନ ଭଜି ମୋ ନାଁ ଭଜନ କର... ଏବେ ତାକୁ ନୂଆ ଦର୍ଶକ ମିଳୁଛନ୍ତି । ଆମ ଭଳିଆ ପୁରୁଣା ସାଙ୍ଗ ଗନ୍ଧଉଛନ୍ତି ।"

"ଆମେ ଆମ ଗୁଣରୁ ଭୋଗୁଛେ । ତୋ ପୁଅକୁ ଦିନେ ଦେଖିବାକୁ ଆସିଲାନି, ଦଶ ହଜାର ଟଙ୍କା ଦେଲା, ତୁ କାହିଁକି ନଉଥିଲୁ ନା?"

"ଯିବା ଆସିବା ରାସ୍ତାରେ ସବୁଦିନେ ମୁହଁ ଚହାଁଚହିଁ । ଆଣିକି ପକେଟରେ ଗୁଞ୍ଜିଦେଲା । ମୁଁ କଅଣ କରିଥାନ୍ତି? ମୋ ପୁଅ କେଡ଼େଟେ ହେଲାଣି କଅଣ ଦିନେ ପଗ୍ରରିଛି? କଅଣ ଭାବିଲା କେଜାଣି?"

"ଯେଉଁ ବନ୍ଧୁତା ଥିଲା ଦାନଦକ୍ଷିଣା ଦେଇ ତାର ପରିସମାପ୍ତି କଲା ।"

"ସେ କାହାର ଧାରୁଆ ହେଇ ରହିବାକୁ ଗ୍ରହେଁନା । ତା ପିଲା ଡାକ୍ତର ଖାନାରେ ପଡ଼ିଲା ବେଳେ ଗଡ଼ିଗଡ଼ି ଜଗିଥିଲି, ତାର ମୂଲ ଦେଇଦେଲା । ହେଇ ଦେଖ୍, ମୁଁ ତୋତେ ଗିଲାସେ ନିରୁତା ବନ୍ଧୁତ୍ୱ ଦେଲି, ତୁ ମୋତେ ଗ୍ରରିଟା ବରା ଖୁଆଇଲୁ । ମୁଁ ତୋତେ ଆଞ୍ଜୁଳାଏ ସ୍ନେହ ଦେଲି, ତୁ ମୋତେ ପାଞ୍ଚ ତାରକା ହୋଟେଲରେ ଦି ଗ୍ଲାସ ପିଏଇଲୁ । କି ହିସାବ! ଆମେ କଅଣ ଭାବୁଥିଲେ? ଆମ ଦେଇ ତ ପାଠ ହେଲାନି, ଏ ପିଲାର ବୁଦ୍ଧି ବିବେକ ଅଛି । ହେଲେ ଅଲକ୍ଷଣାଟା ହିସାବ କରୁଛି । ସୁବିଧା ଅସୁବିଧାରେ ମଣିଷ ପାଖରେ ମଣିଷ ଠିଆ ହେବନି ତ ଆଉ କଅଣ ବାଘ, ଭାଲୁ, ଶିଆଳ ଆସି ଠିଆହେବେ?"

"ତୋର ମନେ ଅଛି ? ଟିକେ କିଛି ସମସ୍ୟା ହେଲେ କେମିତି ମୁହଁ କରେ ସେ ? ଯେମିତି ଅସହାୟ ନିରୀହ ଶିଶୁ । ଯଦି ଶିଶୁ ଭଳି ଅସହାୟ, ସେମିତି ଅକପଟ ହେଉନି! ତାର ସେ ମୁହଁ ମନେ ପଡ଼ିଲେ ମୋ ହାଡ଼ ଜଳୁଛି ।"

"ଆମେ କଅଣ ତାଠୁଁ ସୁବିଧା କିଛି ଖୋଜୁଥିଲେ ନା କଅଣ ? ଆମେ ତ ସାଙ୍ଗ ଭାବି ଯାହା କରିବା କଥା କଲେ, ସେ କେତେବେଳେ ବଡ଼ ହୋଟେଲରେ ଦି ଥର ଖୁଏଇଥିଲା ତାର ହିସାବ କଲା । ସେ ବୁଝିପାରୁନି ପ୍ରେମିକା ଗଲେ ଗଣ୍ଡାଗଣ୍ଡା ପ୍ରେମିକା ମିଳିବେ, ବନ୍ଧୁ ହଜିଲେ ଆଉ ବନ୍ଧୁ ମିଳିବେନି ।"

ବରୁଣ ହସିଲା । ଚପ୍ ଖାଉ ଖାଉ କହିଲା, "କୋଉଠି ଖାଲି ଗଣ୍ଡାଗଣ୍ଡା ପ୍ରେମିକା ମିଳୁଛନ୍ତି ? ମୋ କପାଳରେ ତ ଗୋଟେ  ବି ଜୁଟିଲେନି ।"

"କାଇଁ ସେ ଝିଅଟା ନାଁ କଣ, ସେ ଦକ୍ଷିଣୀ ଗୃରୁପାଣି ମ, ହଁ, ସ୍ୱାତୀ?"

ବରୁଣର ମୁହଁ ଉଜ୍ଜଳ ଦିଶିଲା, "କେତେ ଦିନ ତଳେ ମୋ ପାଖକୁ ଫେସବୁକରେ ସାଙ୍ଗ ହେବାକୁ ଅନୁରୋଧ ପଠେଇଲା । ତା ପରଠୁଁ ତ ମୋ ସ୍ତ୍ରୀ ଖୋଳାତଡ଼ା କରୁଛି — କିଏ, କେମିତି ସାଙ୍ଗ ହେଲା, ସାଙ୍ଗ ନା ଆଉ କଅଣ — ଏବେ କେମିତି ସମ୍ଭାଳିବି କହ ?"

"ମୁଁ ସେ ଫେସବୁକ ଟୁକ କରୁନି ।"

"ଲଳିତର ସ୍ତ୍ରୀ ଭାରି ସକ୍ରିୟ । ତାକୁ କେତେ ରକମର ନାଲି ନେଳି ଜାମା ପିନ୍ଧେଇକି ଫଟୋ ଉଠେଇ ଛାଡୁଛି । ବିଚରାଟା ପୋଜ୍ ଦେଇ ଦେଇ କି କରୁଣ ଦେଖାଯାଉଛି! ମୋ ସ୍ତ୍ରୀ ମଝିରେ ମାତିଥିଲା । ମୁଁ କହିଲି – ଯାହା କହିବ କୁହ, ମୋ ସହ ଏମିତି ବାର ମାସରେ ତେର ଛବି ତୋଳି ଏସବୁ ଜାଗାରେ ଛାଡ଼ନି ।"

"ମୋର ପୂର୍ଣ୍ଣ ବିଶ୍ୱାସ ବିବାହର ପାଞ୍ଚ ବର୍ଷ ପରେ ଯୋଉ ମାନେ ଏମିତି କୁଣ୍ଢାକୁଣ୍ଢି ଗାଲ ନେସାନେସି ହେଇକି ଫଟୋ ଉଠେଇ – ମୋ ପ୍ରାଣର ପ୍ରିୟତମ, ତୁମକୁ ଛାଡ଼ି ଜୀବନର କଳ୍ପନା ଅସମ୍ଭବ – ଲେଖୁଛନ୍ତି, ସେମାନେ ପ୍ରକୃତରେ ଘରେ ବାଡ଼ିଆପିଟା ହେଉଛନ୍ତି ।"

"ଆଃ, ସତରେ ଆଚ୍ଛା ଦିନ ଆସିଲା! ବନ୍ଧୁତାରେ ବଜାର ଦର ଲାଗିଲା, ଦାମ୍ପତ୍ୟ ପ୍ରେମ ବି ହାଟଘାଟରେ ପ୍ରଦର୍ଶନୀୟ ବସ୍ତୁ ରୂପ ନେଲା! ଆଉ ଶୁଣିବୁ, ଏଇ କିଛି ଦିନ ତଳେ ଆମ ପଡ଼ୋଶୀ ଫେସବୁକରେ ଗୋଟେ ସ୍ୱଉତ୍ତୋଳିତ ଫଟୋ ଛାଡ଼ିଲେ ପାଇଖାନାରୁ — ଅସହ୍ୟ କୋଷ୍ଠକାଠିନ୍ୟ, ଆପଣମାନେ ଆଶୀର୍ବାଦ କରନ୍ତୁ ।

ଶୁଣ୍ ସାଙ୍ଗେ ସାଙ୍ଗେ କଅଣ ସବୁ ଟିପ୍ପଣୀ ଆସିଲା – ଜଣେ ଲେଖିଲେ, "ଏଇ ଛବିରୁ ଆପଣଙ୍କ ବସିବା ଶୈଳୀ ଠିକ୍ ଜଣା ପଡୁନି । ମୋତେ ଲାଗୁଛି ସେଥିରେ ପରିବର୍ତ୍ତନ ଆଣିଲେ ଆପଣଙ୍କୁ ଉପଶମ ମିଳିବ ।"

ଆଉ ଜଣେ କହିଲା, "ଆପଣଙ୍କ ମୁହଁର ଅଭିବ୍ୟକ୍ତିରୁ ଲାଗୁଛି ଆପଣ ଯଥେଷ୍ଟ ମାତ୍ରାରେ କୁନ୍ଥଉ ନାହାନ୍ତି ।"

ସୌମ୍ୟ ଠୋ ଠୋ ହସିଲା ଆଉ ହଠାତ୍ ଗମ୍ଭୀର ହେଇଗଲା – "ଆମେ କାହିଁକି ସେ ଅଲକ୍ଷଣା କଥା ହଉଛେ ? ଆଜିଠୁଁ ତା କଥା ବନ୍ଦ ।"

"କଅଣ କରିବା, ଆମ ମନରେ ଟିକେ ରହୁଛି ।"

"ତୋ ମନରେ ଟିକେ କାହିଁକି ବହୁତ ଦରଦ ରହୁଛି ।" ସୌମ୍ୟ ତାଚ୍ଛଲ୍ୟ କଲା ।

"ହଁ, ମୋର ଖାଲି ରହୁଛି ? ଫନି ପରଦିନ କାହିଁକି ପଚାରୁଥିଲୁ, ଲଳିତ କେମିତି କଅଣ ସମ୍ଭାଳୁଛି ?"

"ଜାଣିବାକୁ ଚାହୁଁଥିଲି ଅଛି ନା ପାପିଷ୍ଠଟା ଉଡିଗଲା," ସୌମ୍ୟ ରାଗିକି ଫଁ ଫଁ ହେଲା ।

ଏଥର ଦିଜଣ ଚୁପ୍ ହେଇ ଥଣ୍ଡା ଚପ୍ ଖାଇବାରେ ଲାଗିଲେ । ଟହଲିଆ ଆସି ଦି କପ୍ ଚାହା ଥୋଇ ଦେଇଗଲା । କିଏ କହିପାରିବ ବନ୍ଧୁତାର ଜଖମକୁ ସେ ଗରମ ଚାହା କେତେ ଦୂର ପ୍ରତିହତ କରିପାରିବ ?

ପଇସା ଗଣି ନେଲା ବେଳକୁ ଘନ ଭାଇ କେମତି ଟିକେ ଦୋଷୀ ଦୋଷୀ ଭଳି କହିଲା, "ଆସନ୍ତା ଗୁରୁବାର ଆସିବେ ଆଜ୍ଞା । ମଣ୍ଡା କରିବି ।"

ଘନଭାଇ ହାତର ମୋହିନୀ ମଣ୍ଡା – ଜାଫ୍ରାନ୍ କେଶର ଦିଆ ଅପୂର୍ବ ସୁନେଲି ରଙ୍ଗର ମଣ୍ଡା । ଦହିଛେନା, ଗୁଡ଼, ନଡ଼ିଆପୁର ସହ ହାଲୁକା ଗୁଜୁରାତି ଗୁଣ୍ଡର ନିଶା ଘାରିଲା ଭଳି ବାସ୍ନା...

"ହଉ, ଦେଖିବୁ" କହି ଦୁଇ ଜଣ ନିଜ ନିଜ ଗାଡ଼ି ଆଡ଼କୁ ଆଗେଇଲେ ।

ଗୁରୁବାର । ସନ୍ଧ୍ୟା ସନ୍ଧ୍ୟା ହେବ । ଘନ ଭାଇ ଦୋକାନରେ ବରୁଣ ଓ ସୌମ୍ୟ ଆସି ପହଞ୍ଚିଲେ । ଟହଲିଆ ଆଣି ଦୁଇ ଥାଳି ମଣ୍ଡା ଥୋଇଦେଲା । ଦୁଇଟା ଥାଳି ଦେଖି ବରୁଣ ଓ ସୌମ୍ୟ କିଛି କ୍ଷଣ ଅସହଜ ମନେହେଲେ ।

"ଆଜ୍ଞା, ଦରଦାମ୍ ବଢ଼ୁଛି," ଘନ ଭାଇ କହିଲା, "ଆଜିଠୁଁ ନୂଆ ଦାମ୍ ଲାଗିବ ।"

ଗୋଟେ ଗରମ ମଣ୍ଡା ହାତରେ ଉଠଉ ଉଠଉ ସୌମ୍ୟ କହିଲା, "ଲଳିତ ମଣ୍ଡାକୁ କେତେ ସୁଖ ପାଉଥିଲା । ଆଖି ପିଛୁଳାକେ ଦିଟା ଶେଷ କରିଦଉଥିଲା!"

ବରୁଣ ସହମତି ଜଣାଇ ହସିଲା । ସେ ମଣ୍ଡାଟେ ଖାଉ ଖାଉ କହିଲା, "ଆମ ଘର ପାଇଁ ଦୁଇଟା ଥଳି କରିଦିଅ ହୋ । ଘରଣୀ ତାଗିଦ କରିଛନ୍ତି – ମଣ୍ଡା ନେଇକି ଆସିବ ।"

(କାଦମ୍ବିନୀ, ୨୦୨୧)



# ରାଗ ଅନୁରାଗ

(୧)

ମୋ ପ୍ରେମିକା ଶ୍ରୀ ନଅ ମାସ ତଳେ ବାହାହେଇଛି । ଯଦିଓ ପ୍ରଥମେ ତା ସହ ଆଗଭଳି ସବୁଦିନେ କଥା ହଉଥିଲି, ଗତ କେଇମାସ ହେଲା ସବୁପ୍ରକାର ମନକୁ ଅନ୍ୟ ଆଡ଼େ ରଖିବାକୁ ଚେଷ୍ଟା କରୁଛି । ମୋ ନୂଆ ସହକର୍ମୀ ଝିଅକୁ ଟିକେ ଅଧିକ ଗୁରୁତ୍ୱ ଦେଉଛି । ସେ ମୋ କାମଦାମ କରିଦେଉଛି । ବାହାହେବା ବର୍ଷେ ଖଣ୍ଡେ ଆଗରୁ ଶ୍ରୀ ଭାରି ଅଧିକାର ସାଧୁଥିଲା । ଏମିତି ତ କେତେ ଲଳିତା ବନିତା ମୋ ଜୀବନରେ ଆସିଥିଲେ, ଶ୍ରୀ ସହ ଅଜାଣତରେ କେମିତି ଗୋଟେ ମାୟା ଲାଗିଯାଇଥିଲା ।

ମୁଁ କଅଣ ତାକୁ ମୋ ସବୁ ଭଲପାଇବା ଦେଇନଥିଲି? ମୋ ଅହଂର ପରିସୀମା ବାହାରେ ମୁଁ କଅଣ କେବେ ତାକୁ ଚାହିଁଥିଲି? ସବୁ କିଛି କଅଣ କେବଳ ଆତ୍ମନିରତି ଥିଲା?

ଶ୍ରୀ ପାଖରେ ଥାଏ ତ ମନ ସମୁଦ୍ର ଲହଡ଼ି ଭାଙ୍ଗେ, ଉଭେଇଯାଏ ବିଫଳତା, କ୍ଲାନ୍ତି, ସଂସାର — ମନେ ହୁଏ ଆମେ ଦୁହେଁ ଯେମିତି ସମୟର ଆରମ୍ଭରୁ ଓ ଅନନ୍ତକାଳର ଶେଷ ପର୍ଯ୍ୟନ୍ତ ଏକ । ମୁଁ ତାକୁ ମୁହୂର୍ତ୍ତେ ପାଇଁ ବି ଭାବନାରୁ ଅଲଗା କରିପାରେନା, ଅଥଚ ଜୀବନରୁ କେମିତି ଦୂର କରିପାରିଲି? ତା କାହିଁକିର ଉତ୍ତର ମୋ ପାଖରେ ନାହିଁ । ମୋ ଆଖିରେ ସେ ସବୁଠୁଁ ସୁନ୍ଦର । ମୋ ମୁହଁ ତା ହାତ ଆଞ୍ଜୁଳାରେ, ଯେମିତି ମୁହୂର୍ତ୍ତକରେ ବିତିଯାଏ ହଜାରେ ଆଲୋକବର୍ଷ ।

ତାର ସେଇ ଅନବଦ୍ୟ ଆଖି, ନିଜ ଭିତରେ ହଜିଯିବା, ଆଉ ଯେତେ ଅଦ୍ଭୁତ କଥା...

"ଆଜି ନା କଅଣ ହେଲା ଜାଣିଛ ? ଆଜି କଦମ୍ବ ବନେ ବଂଶୀ ଗୀତରେ ମୁଁ ନାଚିଲି । ନାଚ ପରେ ଗୁରୁଜୀ କେତେ ସମୟ ମୋ ମୁଣ୍ଡ ଆଉଁସି ଦେଲେ । ଆଉ କିଛି କହିଲେନି । ପରେ ମୋ ସାଙ୍ଗ ପ୍ରଭାସ ମୋତେ କହିଲା ଏଇ ଗୀତରେ ମୁଁ ଆଗରୁ ଏତେ ସୁନ୍ଦର କେବେ ନାଚି ନଥିଲି । ସେ କହିଲା – ଶ୍ରୀ, ଆଜି ଅଭିନୟ କଲାବେଳେ ତୋ ଆଖିରେ କି ଭାବ, ତୁ ସତରେ ପୁରା ତନ୍ମୟ ହେଇଯାଇଥିଲୁ ।"

"ଆଚ୍ଛା ?"

"କେଜାଣି । ମୁଁ ତ ତୁମ କଥା ଭାବୁଥିଲି । କେତେ ଥର ଏଇ ଗୀତରେ ନାଚିଥିବି । ଏଥର ତ ଘରେ ଜମା ଅଭ୍ୟାସ ବି କରିପାରିନଥିଲି । ୟୁଟ୍ୟୁବରୁ ଗୀତ ଶୁଣି ଶୁଣି ତୁମ କଥା ଭାବୁଥିଲି । କଳାଶ୍ରମରେ ତୁମ କଥା ଭାବୁ ଭାବୁ ନାଚ ବି ସରିଗଲା ।"

ଆଉ ଏବେ ଅବଶେଷ ଖାଲି ଆକ୍ଷେପ, ତାଳଫୋଟକା ଚିଠି, ଲୁହବାଣ ।

ତୁମେ ଭାବିଥିଲ ମତେ କିଛି ଖବର ମିଳିବନି । କାମରୁ ଫୁରସତ୍ ନାହିଁ, ଦୁନିଆ ଜଞ୍ଜାଳରେ ମୁଁ ଘାଣ୍ଟି ହେଇଯାଉଛି — କେତେ ବାହାନା! କହିବ ତ ମୋତେ ଆଉ ଜଣେ ମିଳିଯାଇଛି, ସେ ମୋତେ ଚନ୍ଦନରେ ପୋଛୁଚି, ମୋତେ ମୟୂର ପରରେ ବିଞ୍ଚୁଛି, ମୁଁ ମୂର୍ଚ୍ଛା ଗଲେ ପାଣି ଛିଞ୍ଚୁଛି, ତୁମର ଆଉ ଶ୍ରୀ ଲୋଡ଼ା ନାହିଁ । ଏତେ ଗୌରଚନ୍ଦ୍ରିକା ମେଲିବା କଅଣ ଦରକାର ଥିଲା ?

ତୁମେ କିଛି ଜାଣନା, ଶାମୁକାରେ କ୍ଷୀରପିଆ ଅବୋଧ ଛୁଆ ତ! ଏମିତି କିଏ କାହାକୁ ଖାଲିଟାରେ ସାତପର କରିଦିଏ ନା କଅଣ ? ତୁମ ସହ ଦେଖା ହୁଅନ୍ତା କି, ବୁଝେଇ ଦିଅନ୍ତି । ନା, ମୁଁ ନ ଚିହ୍ନିଲା ଭଳି ଚାଲିଯାଆନ୍ତି । ତୁମେ ମୋତେ ପଛରୁ ଡାକନ୍ତ କି ? ନାଁ, ଆଉ ଆଗଭଳି କିଛି ନାହିଁ, ସବୁ ବଦଳି ଯାଇଛି, ହେଲେ ମୋ ମନ ସେ କଥା ମାନିବାକୁ ନାରାଜ ।

ଏମିତି ଗ୍ରେଟା ପ୍ରେମିକ ଆହାଃ, କେତେଟା ଟଙ୍କା ଦେଇଥିଲ ଯେ ସେ ଟଙ୍କା ପୁଣି ଫେରିଚାହୁଁଛ ? ଫେରେଇବିନି ଆଉ କଅଣ, ତୁମର ସଦ୍ୟତମ କଅଁଳକହି ରାଧାକୁ ଧରି ଗାଡ଼ିରେ ଘିରିଘିରି ବୁଲିବ । ତୁମ କୃପାରୁ ମୁଁ ଏଠି ଆଠଦିନରେ ଥରେ ଯୋଉ ମନ ବିଶେଷଜ୍ଞଙ୍କ ପାଖକୁ ଦଉଡ଼ୁଛି, ତାଙ୍କ ପାରିଶ୍ରମିକ କିଏ ଦେବ, ମୋ ଶ୍ୱଶୁର ? ଦିନେ ବୁଝିବ, କାନ୍ଥରେ ଜୀବନ ଜ୍ୱାଳାରେ ମୁଣ୍ଡ ପିଟିବ, ସେତେବେଳେ ମନେପଡ଼ିବ । ହଁ ।

ମୁଁ ତ ଏବେ ଭାବୁଛି, ମୁଁ ପ୍ରେମ କରୁ ନ ଥିଲି, ବାଉଁଶ ରାଣୀ ଖେଳୁଥିଲି—ଆଶ୍ରା

ମାଟି କେତେବେଳେ ଖସିଗଲା, ବାସ୍, ମୁଁ ପଡ଼ିଲି କୋଉ ବହଳ ଅନ୍ଧାରରେ । ମୋ ମନର ଖିଆଲି ଗୀତ ଏଇଠି କୋଉଠି ପଡ଼ିଥିବ । ମୋ ଭିତରେ କଅଣ ଏତେ ଖୋଜୁଛି ମୁଁ? ଅହୋଃରାତ୍ର? ଦିନେ ନିଜକୁ ଖୋଜି ଖୋଜି ମୁଁ ତୁମକୁ ପାଇଥିଲି । ହୁଏତ ତୁମକୁ ଖୋଜି ଖୋଜି ଶେଷରେ ମୁଁ ନିଜକୁ ପାଇବି । ବୋଧେ ସେଦିନ ମୁଁ ତୁମକୁ ପୂରାପୂରି ପାସୋରି ଦେବି, ବେଳ ଅବେଳରେ ତୁମ କଥା ମନେ ପଡ଼ିଲେ ଆଖି ଆଉ ଜକେଇ ଆସିବନି । ଅଥବା ତୁମେ ଅମା ଅନ୍ଧାର ହେଇ ମୋ ଭିତରେ ଏମିତି ରହିବ, ସ୍ୱପ୍ନ ହେଇ ଫେରିବ ।

ଆମେ ଆଉ ଥରେ ସେ ନିଛାଟିଆ ଜାଗାକୁ ଯିବା ଯୋଉଠି ପୃଥିବୀର ସବୁଠୁ ପୁରୁଣା ମନେ ହେଉଥିବା କୃଷ୍ଣଚୂଡ଼ା ଆକାଶକୁ ଢ଼ାଙ୍କି ପୋଖରୀକୁ ଛାଇ କରି ଡାଳ ମେଲେଇଛି । ତୁମେ ପୁଣି ଥରେ ସେଇ ଗୀତଟି ଗାଇବ କି? କୃଷ୍ଣଚୂଡ଼ାର ଛାଇ ଋତୁ ପରେ ଋତୁ ବଦଳି ଯିବାର ଗୀତ?

ଟିକେ ଦୂରରେ ବସି ମୁଁ ଦେଖନ୍ତି, ସ୍ଥିର ଅବିଚଳ ପାଣି ଆଉ କେମିତି ବଦଳି ଯାଇଛି ମୋ ନିଜ ପ୍ରତିଛବି ।

ହଁ, ଉପଲବ୍ଧିର ଗୋଟିଏ ମୁହୂର୍ତ୍ତ ଯଦି ଅବା ଆସେ ତାକୁ ଧରି ରଖିବାକୁ ଆମେ ପୂରା ଭୁଲିଯିବା ।

(୨)

ଦିନ ଶେଷରେ ଛାଇ ଅନ୍ଧାରରେ ଶ୍ରୀ ଆଉ ଫେରିନି । ଆଖିରେ ଆଖିଏ ଜହ୍ନରାତି ନେଇ ସେ ଆଉ କେବେବି ଫେରିବନି । କେତେ ବର୍ଷ, ହଁ, ପ୍ରାୟ ତିନି ବର୍ଷ ପାଖାପାଖି ହେବ, ଆମର ଆଉ କୌଣସି ପ୍ରକାର କଥାଭାଷା ନାହିଁ । ପରସ୍ପରର ଅଂହକୁ ଛେଚିଛେଚି ଦରମରା ଫୋପାଡ଼ି ଶେଷରେ କ୍ଲାନ୍ତ ହେଇ ଆମେ ନୀରବି ଯାଇଛୁ । ମୁଁ କେତେ ଦୋଷୀ, କେତେ ବା ମୁଁ ତାକୁ କ୍ଷମା କରିପାରିଛି? ଏ ହିସାବ କରିବାକୁ ମୋର ଇଚ୍ଛା ନାହିଁ । ଅସଂଖ୍ୟ ସଂପର୍କ ପାଖରେ ବନ୍ଧା ପଡ଼ିଛି ମୁଁ । ଆପାତତଃ, ଜୀବନ ମୋର ଚମକୁଛି ଭୟାନକ ମଧ୍ୟମମାନର କଳା, ଆସର, ଗୁଲିଖଟି, ବୃଥା ଆଡ଼ମ୍ବର ଓ କ୍ୱଚିତ୍ ଛାପଛାପିଆ ସ୍ମୃତିରେ ।

"ମୋ ପାଖରେ ବହୁତ ଟଙ୍କା ଥିଲେ ମୁଁ ଗୋଟେ ସିନେମା କରନ୍ତି—ତୁମ ମୁହଁର ସବୁ ଛୋଟ ଛୋଟ ନିଖୁଣ ଅଭିବ୍ୟକ୍ତିକୁ କ୍ୟାମେରାରେ ଧରି ରଖନ୍ତି ।"

"ସିନେମା ହଲରେ କୁଆ ଉଡ଼ନ୍ତେନି ।" ଶ୍ରୀ ଖିଲିଖିଲି ହସିଲା ।

"ମୁଁ ଏକା ବସି ଦେଖନ୍ତି ।"

"ଗୋଟେ ଗୀତ ଗାଇବାକୁ କହିଲେ ତ ଦୁନିଆ ବାହାନା, କଅଣ ନା ସିନେମା କରନ୍ତି! ତୁମେ ସବୁବେଳେ ଗୀତ ଗାଇବା ଆଗରୁ ଏମିତି କାହିଁକି ବାଡେଇ ଛାଟି ହୁଅ କେଜାଣି?"

"ମୁଁ ଯେତିକି ଭଲ ଗାଇବାକୁ ଚାହୁଁଛି, ସେମିତି ଗାଇପାରୁନି । ସୁରରେ ସେମିତି କିଛି ସୁଧାର ଆଣିପାରୁନି । ନିଜର ଦୁର୍ବଳତା ମୁଁ ଭଲ ଭାବେ ଜାଣେ ।"

"ଏମିତି ନିଜେ ନିଜେ ଭାବି ଦେଲେ ହୁଏ ନା କଅଣ? ଦେଖ, ମୁଁ କେମିତି ନାଚୁଛି — ଏବେ ହରିଣ ଛୁଆଟେ ହେବି ।"

ଯା କହି ଶ୍ରୀ ହରିଣ ଛୁଆଟେ ଭଳି ଓଡ଼ିଶୀ ଠାଣିରେ ପାଦ ପକେଇ ଡ଼େଇଁବାକୁ ଲାଗିଲା ।

ଟିକେ ରହି କହିଲା ଦେଖ, "ମୁଁ ମୟୂରଟେ ହେଇ କେମିତି ନାଚିବି ।"

ସେ ହାତ ମେଲେଇ ଦୁଇ ଗୋଡ଼କୁ ସନ୍ତ୍ରମରେ ଟେକି ମୁହୂର୍ତ୍ତକରେ ମୟୂରଟିଏ ପାଲଟିଗଲା ।

ମୁଁ ସେମିତି ତାକୁ ଚାହିଁରହିଥାଏ ।

"ଖାଲି ତ ମୁଗ୍ଧ ମୋହିତ ହେଲ, ମୁଁ କଅଣ କହୁଛି ଟିକେ ଶୁଣ ।"

"ଥାଉ ସେକଥା । ଏମିତି ଏତେ ଦିନ ଗଲାଣି, ଆଉ ବାକି ସମୟ ବି ଚାଲିଯିବ । ମୋର କିଛି ଉଚ୍ଚାଭିଳାଷ ନାହିଁ ।"

"ଓହୋଃ, ତୁମେ ଗୀତ ଗାଇଲେ ଯେମିତି ମୋ ବାପାଙ୍କର ନାଁ ହଉଛି!"

"ନାଁ, ମୋ ଦ୍ୱାରା ଆଉ ନୂଆ କିଛି ହେବନି । ନା ନୂଆ କିଛି ତିଆରି କରିପାରୁଛି ନା ସେମିତି ଭଲ ଗୀତ ଗାଇବାକୁ ମିଳୁଛି ।"

"ବସିକି ହାର୍ମୋନିଅମରେ ସୁର ତୋଳିଲେ ସିନା, ଖାଲି ଭାଳିହେଲେ କଅଣ ହେବ । ଭାବିଥିଲି ଗୋଟେ କଳାକାରକୁ ମନ ଦେଇଛି, ମୋତେ ତା କଳାରେ ସାଇତି ରଖିବ ।"

"ତୁମେ ଆରୋହଣ, ଅବରୋହଣ ତୁମେ..."

"ଆଉ ତୁମେ ଗୋଟେ ମସ୍ତବଡ଼ ଠକ..." ଶ୍ରୀ ହସି ହସି ମୋ ମୁଣ୍ଡ ବାଳକୁ ସଜାଡ଼ିବାରେ ଲାଗିଲା — "ମୁଁ ଯଦି ଗୀତ ଗାଉଥାଆନ୍ତି, ତୁମ ସହ ଆହୁରି ବେଶି ସମୟ ବିତେଇ ପାରୁଥାନ୍ତି । ଆମେ ମିଶିକି ଗୀତ ଗାଆନ୍ତେ, ଏକାଠି କେତେ

ଆଡ଼େ ଗୀତ ଗାଇବାକୁ ଯାଆନ୍ତେ, ଷ୍ଟୁଡିଓରେ ରେକର୍ଡିଙ୍ଗ କରନ୍ତେ ।"

"ଏକାଠି ରହିଲେ ମୁଁ ଆଉ କିଛି କରନ୍ତିନି । ଆମେ କୁଆଡ଼େ ଦୂରରେ ଯାଇ ଜଙ୍ଗଲରେ ରୁହନ୍ତେ ।"

ମୁଁ ସିନା ଏମିତି କହେ, କିନ୍ତୁ ମୁଁ ତାକୁ ବିବାହର ପ୍ରତିଶ୍ରୁତି ଦେଇନି । ଆଉ ସେଥିପାଇଁ ସେ ମୋତେ କେବେ ଦେଖେଇ ଶିଖେଇ କିଛି କହିନି । ଏ ଭାଗ୍ୟହୀନ ନିଷ୍ଠୁର ସତଟିକୁ ସେ ଆତ୍ମନିୟନ୍ତ୍ରଣ କରି କେମିତି ମାନି ନେଇଛି କେଜାଣି? ସେ ଯାହାର ନିବିଡ଼ ଦେହ ଯେମିତି ମାଟି ନୁହେଁ ।

"ଛାଡ଼ ସେ ସବୁ କଳ୍ପନା । କିଏ କଅଣ ଜାଣିଥାଏ ଆମ ଜୀବନରେ ଯାହା ସବୁ ଘଟେ କଅଣ ପାଇଁ ଘଟେ? ମୁଁ କଅଣ ଜାଣିଥିଲି ଆମେ ଏମିତି ଯୋଡି ହେଇଯିବା!"

"ନାଁ, କେହି ଜାଣି ନଥାନ୍ତି । ହେଲେ ଏବେ ମୁଁ ଭୀଷଣ ସ୍ୱାର୍ଥପର ।"

ଛନ୍ଦି ହୋଇଯାଏ ଆମର ଶିରା ପ୍ରଶିରା ଧମନୀ, ମିଶିଯାଏ ରକ୍ତର ପ୍ରବାହ ।

ସେ କଅଣ ମୋ ନୂଆ ଗୀତଟା ଶୁଣିଥିବ? କଥା ହେଲେ ପୁଣି କନ୍ଦାକଟା କରିବ, ଛିଗୁଲେଇବ, ଯେତେ ବାଜେ କଥା କହିବ: ଜୀବନରେ, ମିଳନରେ, ପ୍ରତିହିଂସାରେ ତୁମେ ଯେମିତି ଚାହିଁଲ ସେମିତି ହେଲା । ଯନ୍ତ୍ରଣାରେ, ଶୂନ୍ୟତାରେ, ମୃତ୍ୟୁରେ ମୁଁ ଯେମିତି ଚାହେଁ ସେମିତି ହେବ ।

କଅଣ ଚାହେଁ ସେ? ନିଆଁ ଗୁଳାଟେ ଜଳିପୋଡ଼ି ହଉଛି, ମୋତେ ବି ସାଙ୍ଗରେ ଜାଳୁଛି । ସବୁ ଜଳିପୋଡ଼ି ପାଉଁଶ, ତା ଭିତରେ ହଜିଲା କସ୍ତୁରୀ ଖୋଜିଲେ କଅଣ ମିଳିବ?

ଏମିତି ଯେଉଁସବୁ ଜୀବନ ଗୀତ ଆକସ୍ମିକ ଭାବେ ଯୋଡ଼ି ହେଇଯାଏ, ସେସବୁର ସ୍ୱର ଲୟ ତାଳମେଳ କଅଣ ଶେଷ ପର୍ଯ୍ୟନ୍ତ ରହେ? ମୋର ଗୁଡ଼େ ସାଙ୍ଗଙ୍କର ଚାକିରିବାକିରି ହେଇନଥିଲା । ସ୍ୱପ୍ନସୁନ୍ଦରୀମାନେ ପରିବାର ଚାପରେ ଭଲ ପ୍ରସ୍ତାବ ଦେଖି ବାହା ହେଇଗଲେ, ତାଙ୍କୁ ମନେ ପକେଇ ଦାଢ଼ିଫାଢ଼ି ବଢ଼େଇ ଦଳେ କାନ୍ଦିକାନ୍ଦି ଦିନରାତି ଏକ କଲେ । ପୁଣି କିଛି ଝିଅ କହିଲେ — ଆମକୁ ନେଇ ଯାଅ । ବେକାର ପ୍ରେମୀମାନେ କହିଲେ — ନା, ଆମେ ନେଇ ଆଣି ଥୋଇ ପାରିବୁନି । କେତେବର୍ଷ ତଳେ ମୋର ଗୋଟେ ଦେବଦାସ ସାଙ୍ଗକୁ ବୁଝେଇଥିଲି: "ବାୟାଟାରେ, ଯିଏ ନିଜ ସୁରକ୍ଷା, ଭବିଷ୍ୟତ କଥା ଭାବି ବାଟ

କାଟି ଗ୍ଲିଗଲା, ସେ କଅଣ ଆଉ ଫେରିବ ? ଯଦି ବା ଫେରେ, ସେ କଅଣ ତୋ ପାଇଁ ଫେରିବ ? ଜଣେ ଯଦି ନିଜ କଥା ଭାବିଲା, ସେଥିରେ କ୍ଷତି କଅଣ ? ତୁ ତୋ କଥା ଭାବେ । ସେ ଥରୁଟିଏ ଡାକିଲେ ତୁ ସବୁ ଛାଡ଼ିଛୁଡ଼ି ତା ପାଖକୁ ପଳେଇବୁ କହୁଛୁ, ହେଲେ ସତରେ ଧାଇଁ ଯାଇପାରିବୁ ? ଗଲେ ବି କଅଣ ପାଇବୁ ?" କିଛି ବର୍ଷ ପରେ ସେ ବାହା ହେଇ ସୁଖ ସଂସାର କଲା, ଆଉ ଏବେ ଛନଛନିଆ ପ୍ରେୟସୀଟିଏ ଧରି ମହାଆନନ୍ଦରେ ବୁଲୁଛି ।

ଶ୍ରୀ ଅନ୍ୟ କାହା ହାତ ଧରି ସଂସାର କଅଣ କରିନଥାନ୍ତା ? ତା ବୋଲି ସେ କଅଣ ଆଶା କରୁଥିଲା ମୁଁ ତା ସ୍ୱାମୀ ସୋହାଗ ଶୁଣିଥାନ୍ତି, ମୋର ଆଉ କିଛି ଧନ୍ଦା ନାହିଁ! ମୁଁ ନିଜ ସୁବିଧା ଦେଖେ, ନିଜ ଆରାମ ବାହାରେ ଆଉ କିଛି ବୁଝେନା । ମୋର ପ୍ରକୃତି ସେମିତି, ଆଜି ଆଉ ବଦଳେଇ ପାରିବି କି ? ଏଥିପାଇଁ ମୋତେ କମ୍ କଥା ଶୁଣେଇନି ଶ୍ରୀ, ସେ ଅସମ୍ଭବ ଝିଅଟା ।

କାମିନୀରଙ୍କା, ଠକ ଶିରୋମଣି !

କାଲି ସନ୍ଧ୍ୟାବେଳେ ଚଣ୍ଡୀ ମନ୍ଦିର ଯାଇଥିଲି । ମନ୍ଦିର ଛକରେ ଗୋଟେ ଟ୍ରକ ପଛରେ ଲେଖା ପଢ଼ିଲି: ଏ ସଂସାରରେ କେବଳ ପାନବାଲା ହିଁ ସଚ୍ଚା, ସେ ପଗ୍ୱରିକି ଚୂନ ମାରେ । ମୁଁ କଅଣ କରିବି ଯେ ସେତିକି ବେଳୁ ମୋର ତୁମ କଥା ମନେ ପଡୁଛି । ଏକଥା ନ କହିକି ମୁଁ ଚୁପ୍ ରହିପାରିଥାନ୍ତି, କିନ୍ତୁ ତୁମ ମୋ କଥା ଆଉ କାହାକୁ କହିପାରିବି କି ? ଏତେ ଦିନର ଯେଉଁ ଅଭ୍ୟାସ ସେ କଅଣ ସାଙ୍ଗେ ସାଙ୍ଗେ ଉଭେଇଯିବ ? ମୁଁ ବେଳେ ବେଳେ ଭାବି ଆଶ୍ଚର୍ଯ୍ୟ ହୁଏ ଯେ ତୁମେ ମୋ ଇ-ଚିଠିକୁ ସାଙ୍ଗେ ସାଙ୍ଗେ ଡିଲିଟ୍ ନ କରି ପଢୁଛ ।

ମୁଁ ମନେ ମନେ ତୁମକୁ କେତେ ସଁପିଛି: ସେ କଅଁଳକଢ଼ି ପାନେ ଦେବ, ତାପରେ ନିଜ ଭୁଲ୍ ବୁଝିବ, ଅନୁତାପ କରିବ, ମୋ ପାଖକୁ ଫେରିଆସିବ । ମୁଁ ଖୁସି ହୁଏ ମୋ ପାଖକୁ ଆସିବାର ସବୁ ବାଟ ମୁଁ ବନ୍ଦ କରିଦେଇଛି । ସେତେବେଳେ ତୁମେ ଭୋଗିବ, ଛଟପଟ ହେବ, କଲବଲ ହେବ, ବୁଦ୍ଧି ଶିଖିବ । କେଜାଣି, ହୁଏତ ତୁମେ ଅନ୍ୟ ଉପାଦାନରେ ଗଢ଼ା, ତୁମେ ହୋହାଲ୍ଲା ଉଲ୍ଲାସରେ ଥିଲ, ହୋହାଲ୍ଲାରେ ରହିବ । ନିଜ ଅହଂକାର ଓ ସ୍ୱାର୍ଥର ପରିଧି ବାହାରେ ଅନ୍ୟକୁ ବୁଝିବାକୁ ହୁଏତ କେବେ ଚେଷ୍ଟା କରିବନି । ଏ ଭାବେ ବି ଅନ୍ୟକୁ ବିଗ୍ଭର କରାହୁଏ ତୁମେ କଅଣ ସେ କଥା ଜାଣନା ?

ତୁମ ସହ ଏ ଜନ୍ମ ବା ଜନ୍ମାନ୍ତରରେ ଆଉ କୌଣସି ପ୍ରକାର ମୁଁ ଯୋଡ଼ି ହେବି

ନାହିଁ, ଏ କଥା ଦିନ ଆଲୁଅ ଭଳି ସ୍ପଷ୍ଟ । ବେଳେ ବେଳେ ମୁଁ ଅବାକ୍ ହୁଏ, ଖାଲି କଅଣ ଅଭ୍ୟାସ ଦୋଷରୁ ବା ଅସ୍ଥିମଜ୍ଜାର ଖୁନ୍ଦାଖୁନ୍ଦି ଶୂନ୍ୟତାକୁ ପାସୋରିବାକୁ ତୁମ ସ୍ମୃତିର ସାହାଯ୍ୟ ନିଏ? ନା, ତା ଠିକ୍ ନୁହେଁ । କେତେ କେତେ ମୁହୂର୍ତ୍ତରେ ମୁଁ ତୁମକୁ ହିଁ ଲୋଡ଼ିଛି, ତୁମକୁ କେବଳ ତୁମକୁ ଖୋଜିଛି । ଆଉ ସେଥିପାଇଁ ମୁଁ ନିଜକୁ ଧିକ୍କାର କରିଛି । ଲଜ୍ଜା ନାହିଁ ମୋତେ, ଯା ମନରେ ମୋ ପାଇଁ ଟୋପାଏ କରୁଣା ନାହିଁ, ଯିଏ ମୋ ବିଶ୍ୱାସର ମୂଳଦୁଆକୁ ହଲେଇ ଚାଲିଯାଇଛି, ମୁଁ ତାକୁ ଝୁରି ହେଉଛି, ତା କଥା ଭାବି ହେଉଛି । ସେ ତ ସବୁ ଭୁଲି ନୂଆ ଜୀବନ ଆରମ୍ଭ କଲାଣି । ନିଜକୁ ଧିକ୍କାର କରି କରି ମୁଁ କୁଆଡ଼େ କେତେ ଦୂର ଚାଲିଯାଏ, ମନେ ହୁଏ ତୁମ ମୋ ଭିତରେ ପୃଥିବୀ ଅନ୍ତରୀକ୍ଷର ବ୍ୟବଧାନ — ବେଶ୍ କେତେ ଦିନ ମନ ହାଲୁକା ଲାଗେ, ମିଛ ମାୟା ସଂସାର ପାଇଁ ନୂଆ କୌତୂହଳ ଜାଗେ । ହେଲେ କିଛି ଦିନ ପରେ ପୁଣି ଯୋଉ କଥାକୁ ସେଇ କଥା — ଜହ୍ନ ଦର୍ପଣରେ ତୁମ ମୁହଁ ଆଗ ଭଳି ସଫା ଦିଶିଯାଏ ।

କି ଅଡୁଆ ସତେ — ଯିଏ ମନ ଦେଇଛି, ସେ ଜାଣିଛି!

(୩)

ଶ୍ରୀ ଓ ମୁଁ ଅଲଗା ହେବା ଗୋଟେ ଯୁଗ ହେଲାଣି ।

ମୁଁ ଜାଣିଥିଲି ଶ୍ରୀକୁ ନ ଡ଼ାକିଲେ ସେ ଆସିବନି, ତାକୁ ନ ଅଟକେଇଲେ ସେ ରହିବନି । ମୁଁ ଯେତେବେଳେ ଶ୍ରୀଠୁଁ ଅଲଗା ହେବାକୁ ଦୃଢ଼ ସିଦ୍ଧାନ୍ତ ନେଲି, ଭାବିଲି, ହଁ ସେ ତ ଦୂର ସହରରେ ରହୁଛି, ଯିବା ଆସିବା ବାଟରେ ଦେଖା ହେଇଯିବାର ଆଶଙ୍କା ନାହିଁ, ଆଉ ଭ୍ରାମ୍ୟଭାଷଟିକୁ ବନ୍ଦ କରିଦେଲେ ବେଶି ଗୁଡ଼େ ଅଡୁଆ ହେବନି । ଆଗେ ସକାଳୁ ଉଠି ତା ସହ ମିଳନ ମୁହୂର୍ତ୍ତର କଳ୍ପନାରେ ଭାସିବା ଅଭ୍ୟାସଟିରୁ ମୁକ୍ତ ହେବା କି ଯେ କଠିନ ଥିଲା! ମୁଁ ସ୍ଥିର କରିନେଲି ମୋ ଉପରେ ଅଧିକାର ସାଧି ଯୋଉ ହାଡ଼ଜଳା କଥା କହିଥିଲା, ମୋ ଉପରକୁ କେମିତି ଥରେ ଘୁଙ୍ଘୁର ଫୋପାଡ଼ିଥିଲା ମୋ ନାକ ଫାଟୁଫାଟୁ ରହିଲା, ସେସବୁ ଭାବି ମନକୁ ଟାଣ କରିବି । ଯଦିଓ ପରେ ମୁଁ ତା ଆଗରେ କେବେ ସ୍ୱୀକାର କରିନି ଯୋଜନାବଦ୍ଧ ଭାବେ ମୁଁ ଏସବୁ କଲି । ମୁଁ ଧରିନେଲି ସେ ଯେମିତି ମୋ ଜୀବନରେ କେବେ ବି ନ ଥିଲା । ବାସ୍, ଦିନରେ ଘଣ୍ଟା ଘଣ୍ଟା ତା ସହ କଥା ହେଉଥିଲି, ତାକୁ ଯୋଗାଯୋଗ କରିବା ପୂରା ବନ୍ଦ କରିଦେଲି । ସେ ଯୋଗାଯୋଗ କଲେ ମୁଁ ବ୍ୟସ୍ତ, ଦୁନିଆ ଜଞ୍ଜାଳରେ ଘାଣ୍ଟି ହେଉଛି କହି ରଖିଦେଲି । ସହଜଲବ୍ଧ କାମିନୀଟିକୁ ସମୟ ଦେଲି, ତାକୁ ନେଇ ବୁଲିଲି ।

ଯେ କୌଣସି ସଂପର୍କକୁ ନିଜ ଭିତରକୁ ଭେଦିବାକୁ ନ ଦେଲେ ତାହା ବେଶ୍ ଆମୋଦଦାୟକ ।

ଆଉ ତା ପରେ—ଆମେ ମଝିରେ ମଝିରେ କଥା ହେଇଛୁ, ଆଉ ଯେତେ ଥର କଥା ହେଇଛୁ, ପରସ୍ପରକୁ କେବଳ ଆକ୍ଷେପ କରିଛୁ, କିଏ ଠିକ୍ କିଏ ଭୁଲ୍ ତାକୁ ନେଇ ଝଗଡ଼ା କରିଛୁ । ଶ୍ରୀ ହୁଏତ ଭାବୁଥିଲା ମୋ ସହ ଆଲୋଚନା କରି କଅଣ ଗୋଟେ ନିଷ୍କର୍ଷ ବାହାର କରିବ, ଆମର ଏକାଠି ହେବା ଓ ଅଲଗା ହେଇଯିବା ଭିତରେ ଯେମିତି କିଛି ଗୂଢ଼ ରହସ୍ୟ ଲୁଚି ରହିଛି, ସଚରାଚର ଯେ ଯେମିତି ଗୋଟେ ଅଭିନବ କଥା! ଯଥାରୀତି ବ୍ୟବଚ୍ଛେଦ—ତୁମେ ସେମିତି କଲ, ସ୍ନେହ ମମତାର ନାଡ଼ୀ କାଟିକୁଟି କୁଆଡ଼େ ଫୋପାଡ଼ି ଦେଲ?

ହଉ ହେଲା, ମାନିଲି, ମୁଁ ଗୋଟେ ବାଜେ ଲୋକ, ମୋତେ ଛାଡ଼ିଦିଅ, ନିଜେ ଶାନ୍ତିରେ ରୁହ, ମୋତେ ଶାନ୍ତିରେ ରହିବାକୁ ଦିଅ । କିନ୍ତୁ ନା! ସେ କେତେ ଯେ ସେଇ ଅଡୁଆ ସୂତାକୁ ମାଜିଲା । ଶ୍ରୀ ବୋଧେ ଠିକ୍ କହୁଥିଲା — ମୋ ପାଇଁ ସବୁ ସଂପର୍କ, ଏମିତିକି ସଂଗୀତ ଯେମିତି କେବଳ ଆଭରଣ, ମୋ ଅହଂକାରର ଅଭିବ୍ୟକ୍ତି; ସେଠି ନାହିଁ ସମର୍ପିତ ପ୍ରାଣସ୍ପନ୍ଦନ, ନାହିଁ ଅନ୍ତହୀନ ଆକାଶର ଉଦ୍ଭାସ ।

ହଁ, ତା ସହ କେମିତି ଗୋଟେ ମାୟା ଲାଗିଯାଇଥିଲା ।

ଶ୍ରୀ ଦର୍ପଣ ଆଗରେ ବସି ମୁହଁରୁ ପ୍ରସାଧନ ଛଡ଼ାଇବାରେ ବ୍ୟସ୍ତ ।

"ଶୁଣ, ଆମର ପ୍ରଚଣ୍ଡ ଯୁବପ୍ରତିଭା ପଣ୍ଡିତ ଶ୍ରୀଧର କଅଣ କହିଲେ! ଭାଇ ଆପଣଙ୍କ ସାଙ୍ଗରେ ରାଗ ଭୈରବ ଯୁଗଳବନ୍ଦି କରିବି । ମୁଁ  କହିଲି — ତୁମର ଯୋଉ ଅସାମାନ୍ୟ ଗଳା, ମୁଁ କଅଣ ସ୍ୱର ମିଶେଇ ଗାଇ ପାରିବି?"

"ତୁମେ ନା ସତରେ କି ବଦମାସ! ସମସ୍ତଙ୍କର କଅଣ ତୁମ ଭଳି ଈଶ୍ୱରଦତ୍ତ ପ୍ରତିଭା ଅଛି?" ଶ୍ରୀ ହସିଲା ।

"ସେ ତ ଗଦ୍‌ଗଦ୍ ହେଇଗଲା । ମୋର ଯେ କି ଅବସ୍ଥା ହେଲାଣି, ତୁମେ କଅଣ ବୁଝିବ? ଆଗେ ତାକୁ ଦେଖିଲେ ବିରକ୍ତ ଲାଗୁଥିଲା । ଆଉ ଏବେ? ଯୋଉ ନାଁରେ ଶ୍ରୀ ଅଛି ତାକୁ ଦେଖିଲେ ମୁଁ କି ଖୁସି!"

ସେ ଆଖିରୁ ବହଳ କଳା ଅଲିଭ ତେଲଭିଜା କନାରେ ପୋଛୁଥିଲା । ରାତି ଆକାଶରେ ତାରା ଭଳି ସେ ଆଖି ମିଟିମିଟି କଲା ।

"ଏ ଯେଉଁ ମାନସିକତା — କାଲି ସକାଳେ ଗୀତ ଗାଇ ଶିଖିଲି, ଆଜି ନିଜକୁ ପଣ୍ଡିତ କହି ବୁଲିବି, ଦି ଦିନ ପରେ ବଡ଼ ଗୋଟେ ପୁରସ୍କାର ଦରକାର । ଆହୁରି ବାହାସ୍ଫୋଟ ଶୁଣ — ଅଠର ମାସରେ ଅଠରଟା କ୍ୟାସେଟ୍ ବାହାର କରି ଅଠରନଳା ସାଙ୍ଗରେ ସଙ୍ଗୀତ ବସିବି!"

"ତୁମେ ସଂଗୀତ ପ୍ରତିଯୋଗିତାରେ ବିଚାରକ ହେଇକି ଯିବାଆଗରୁ ଯୋଉ ପ୍ରସ୍ତୁତ ହୁଅ, ଏମିତି ସମୀକ୍ଷା କରିବି, ସେମିତି ଗୋଡ଼ ଟାଣିବି, ସେଇଟା କଅଣ? ନୂଆ ଗାୟକଙ୍କ ମୁହଁରୁ ପ୍ରଶଂସା ଶୁଣିବାର କି ଜୋର୍‌ଦାର ପ୍ରୟାସ!" ଶ୍ରୀ ମୁହଁ ଓ ହାତ ଠାଣିରେ ମୋର ନକଲ କଲା ।

ମନେହେଲା ସେ କଣ୍ଢେଇଟେ, ମୁଁ ତାକୁ ପକେଟରେ ପୂରେଇ କୁଆଡ଼େ ଏକାବେଳେ ପଳାନ୍ତି କି! କହିଲି, "ମୁଁ ଯଦି ଏମିତି ଉଦାର ହେବି, ଡ଼ହରା ଗୁଡ଼ାଙ୍କୁ ତୁଚ୍ଛ ନ କରିବି, ବଞ୍ଚିବି କେମିତି?"

"କାହିଁକି, ତୁମ ପାଇଁ ସଂଗୀତ ଯଥେଷ୍ଟ ନୁହେଁ?"

"ତୁମେ ହିଁ ଯଥେଷ୍ଟ, ତୁମେ, ତୁମେ..."

"ହଉ ହେଲା ।"

ମୁଁ ତା ପାଇଁ ମୋ ଆତୁରତା ବଖାଣିଲେ, ସେ ଏ ପଦଟି ଥଟ୍ଟାରେ ବରାବର କହେ । ଆଜି ସନ୍ଧ୍ୟାରେ ଶ୍ରୀର ମଞ୍ଚ ଅଭ୍ୟାସ ଥିଲା, କାଲି ସକାଳେ ନୃତ୍ୟୋତ୍ସବ । ସେ ମୁହଁ ପରିଷ୍କାର କରିସାରି ପାଦରୁ ପାଉଁଜି ଖୋଲିଲା । ହଳଦିମରା ଅଳତାଲଗା ତା ପାଦ, ଘୁଙ୍ଗୁଡ଼ିଏ କେତକୀ କୁସୁମ ।

ସକାଳ ପାଇଁ ସବୁ ଜିନିଷ ସଜାଡ଼ି ଆସି ମୋ ହାତ ଉପରେ ମୁଣ୍ଡ ରଖି ଶୋଇଲା । ମୋ ପାପୁଲିରେ ଅସଂଖ୍ୟ ଯେତେ ରେଖା — ଜୀବନ ରେଖା, ହୃଦୟ ରେଖା, କର୍ମ ରେଖା, ସଂପର୍କ ରେଖା, ପରିବାର ରେଖା, ଭାଗ୍ୟରେଖା — ସବୁକୁ ଆଉଁସୁ ଆଉଁସୁ ତା ଆଖି ମୁଦି ହେଇଗଲା । ମୁଁ ତାର ନିବୁଜ ପଦ୍ମକଢ଼ି ଆଖିକୁ କେତେ ସମୟ ଚାହିଁ ରହିଲି । ତା ନିଦ ଟିକେ ଭାଙ୍ଗିଗଲା, ନିଦୁଆ ଆଖିରେ ସେ ମୋତେ ଜୁଳୁଜୁଳୁ କରି କେତେ କ୍ଷଣ ଅନେଇ ଶୋଇପଡ଼ିଲା । ମୋର ମନେ ହେଲା କେଜାଣି କେତେ କାଳରୁ ମୋ ଚେତନା ଖଣ୍ଡ ଖଣ୍ଡ ଇତଃସ୍ତତଃ ଘୁରି ବୁଲୁଥିଲା, ଆଉ ଏବେ ଗୋଟିଏ ଜାଗାରେ ରୁଣ୍ଡ ହେଇଛି; ମୁଁ ଭବଘୂରା ଯେମିତି ମୋ ଆଦିନୀଡ଼କୁ ଫେରିଆସିଛି । ସ୍ୱପ୍ନରାଇଜରେ ମୁଁ ଗାଇଚାଲେ ଅସରନ୍ତି ଗୀତ, ପବନରେ ଭରିଯାଏ ମୋ ନାଦ ସ୍ୱର, ମୋ ଆତ୍ମାର ଧ୍ୱନି ପ୍ରତିଧ୍ୱନି ।

ମୋର ସେଇ ଶ୍ରୀମୟ ସତ୍ତା — ହୁଏତ ତା ଥିଲା ଶ୍ରୀର ଅନୁରାଗର ପ୍ରତିଫଳନ । ସେ ଶେଷଥର କେତେ କଅଣ ଯେ ଲେଖିଥିଲା ।

ମୁଁ ଆଉ ତୁମ ପାଖକୁ ଲେଖିବିନି, ଗତଥର ଡାକ୍ତର ମୋ ଉପରେ ବିରକ୍ତ ହେଲେ — ମୁଁ ଭଲ ହେବାକୁ ଚାହୁଁନି, ତାଙ୍କ ବାରଣ ସତ୍ତ୍ୱେ ତୁମ ସହ ଯୋଗାଯୋଗ ରଖୁଛି । ମୋର ତ ପୂରା ଜୀବନ ପଡ଼ିଛି, ମୁଁ କେତେ ଭଲ ନର୍ତ୍ତକୀ, ଆଉ ଚେଷ୍ଟା କଲେ କେତେ ସଫଳ ହେଇପାରିବି, ଅକାରଣେ ଅତୀତ କଥାକୁ କାହିଁକି ଧରିକି ବସିଛି ଇତ୍ୟାଦି ଇତ୍ୟାଦି । ତୁମେ ବି ମୋତେ ବୁଝେଇବାକୁ ଚେଷ୍ଟା କରିଛ; ମୁଁ କଳାକାଶରେ ବିଜୁଳି ଭଳି ଚମକିଲେ ତୁମେ ଦୂରରୁ କେତେ ଖୁସି ହେବ: ତାହାହିଁ ତୁମର କାମନା, ତାହାହିଁ ତୁମର ପ୍ରାର୍ଥନା... ମୋର ଯେତିକି ମୁଣ୍ଡ ଠିକ୍ ଅଛି, ସେତିକିରେ ମୁଁ ବୁଝିପାରୁଛି — ତୁମେ ଗୋ ସଂଗୀତ ଜଗତର ଘଡ଼ଘଡ଼ି, ଛେନା ଗୁଡ଼ କଦଳୀ ତୁମ ସୁମନାସ । ସହଜେ କଅଣ ହଜମ ହେଉଛି ?

ସେ ଯାହା ହେଉ ମୋର ଗୁଡ଼େ ସାଂସାରିକ ବିଷୟବୁଦ୍ଧି ହେଇଗଲା! ନିଷ୍କର୍ଷ ଆଉ କଅଣ ? ଯେମିତି ଗୋଟେ ଗୀତର ସୁର ମୁଣ୍ଡ ଭିତରେ ଘୁରୁଛି, ଦରଖଣ୍ଡିଆ, ଅପୂର୍ଣ୍ଣ, ଅସ୍ପଷ୍ଟ; ସେ ସୁର ଅକାଳେ ସକାଳେ ମୋତେ ବ୍ୟସ୍ତ କରୁଛି, ମୋତେ ରଖେଇ ଥୋଇଦଉନି । କେଜାଣି କାହିଁକି ଭାବୁଥିଲି ତୁମେ ମୋ ପାଇଁ ପୂରା ସୁରଟି ଖୋଜି ଆଣିଥାଆନ୍ତ କି ?

ସମୁଦ୍ରକୂଳକୁ ଯାଇଥିଲି । ବେଳାଭୂଇଁରେ ଗୋଡ଼ ଲମ୍ବେଇ ବାଲିରେ ପାଖାପାଖି ଆମ ଦିଜଣଙ୍କ ନାଁ ଲେଖିଲି, ଢେଉ ଆସି ତାକୁ ଧୋଇନେଲା । ମୁଁ ଯେତେଥର ଲେଖିଲି, ଢେଉ ସେତେଥର ଧୋଇ ନେଇଗଲା । ହଠାତ୍ ଗୋଟେ ବଡ଼ ଢେଉ ଆସି ମୋତେ ପୂରା ଭିଜେଇ ଚାଲିଗଲା । ଏଇ ଯେ କଳାମୟ ସମୁଦ୍ର — ବାଲିର ଦେହ ପରେ ଢେଉ ପରେ ଢେଉ, ବାଲିର ଦେହ ଭେଦି ଢେଉ ତଳେ ଢେଉ ଛୁଏଁ ଅବା ମାଟିର ଅନ୍ତରକୁ, ଯେଉଁଠି ହୁଏତ ପଡ଼ିଥିବ ନଈ ବୋହି ଆଣିଥିବା ଦୂର ଗାଁର ସ୍ମୃତି, ବଇରାଗୀ ମନର ଚଉତିଶା, ଅବ୍ୟକ୍ତ ଯେତେ ଭାବନା, ଆଦିମ ସବୁ ଇଚ୍ଛା...

ଦିଗଦିଗନ୍ତ ଛୁଇଁଯାଏ ଆକାଶ ବିଭୋର ଢେଉ, କେତେଥର କେଜାଣି ମୋତେ ବୁଡ଼େଇ ମୋର ଆତ୍ମସତ୍ତାକୁ ଧୋଇ ଧୋଇ ଫେରିଗଲା ।

ଆଜି ସନ୍ଧ୍ୟାରେ ଏଠି ଶ୍ରୀଧରର ଗୋଟେ ସଂଗୀତ କାର୍ଯ୍ୟକ୍ରମ ଅଛି । ଘରୁକୁ ଆସିଥିଲା, ବାରମ୍ବାର କହିକି ଯାଇଛି, ଭାବୁଛି ଯିବି । ମୁଁ ତାକୁ ତୁମ ସହ ଗୋଟେ ଯୁଗଳବନ୍ଦି କରିବାକୁ ପ୍ରବର୍ତ୍ତେଇଲି । ତୁମକୁ କଅଣ କହିକି ଫୁସୁଲେଇବ ଦି ଚାରିଟା ବୁଦ୍ଧି ବି ଦେଲି, ତୁମେ ଯେ ଦିନକୁ ଦିନ ମହେଶ ବାବୁ ଭଳି ଚମକୁଛ

ଆଦି କେତେ କଥା । ଦିନା କେତେ ସେ ତୁମ ସାଙ୍ଗରେ ଜୋକ ଭଳି ଲାଗିବ, କି ବଢ଼ିଆ ମଜା ହେବ!

(୪)

ଟିକେ ଆଗରୁ ମୁଁ ଶ୍ରୀକୁ ଦୂରରୁ ଦେଖିଲି, ସଙ୍ଗୀତ ମହୋତ୍ସବ ଭିଡ଼ ଭିତରେ ତା ଆଖି ମୋ ଉପରେ ପଡ଼ିନି । ଆଉ ସେ ସମୟ ନାହିଁ ଯେତେବେଳେ ମୁଁ ଧାଇଁ ଯାଉଥିଲି ତା ପାଖକୁ – ଭସା ବାଦଲଟେ ହସକୁରୀ ସୋରିଷ କିଆରିରେ ବରଷି ଯିବାକୁ ବ୍ୟାକୁଳ । ରୂପହୀନ ସମୟ ରୂପ ନେଉଥିଲା, ଗନ୍ଧହୀନ ସମୟରେ ଭରି ଯାଉଥିଲା ଅସୁମାରି ଫୁଲର ମହକ...

ତା ସହ ଅନ୍ତିମ ସାକ୍ଷାତ ଥିଲା ପୁରୀ ସମୁଦ୍ର କୂଳରେ, ଛଅ ବର୍ଷ ତଳେ । ମୁଁ ତଳକୁ ମୁହଁ କରି ବସିଥାଏ । ସେ ବାଲିରେ ଗୋଡ଼ ଲମ୍ବାଇଥାଏ । ତା ବାହାଘରକୁ ଆଉ ମାସେ ଥିଲା କି କଅଣ । ଶ୍ରୀ ତା ମନକୁ ଯାହା ଆସିଲା କହି ଚାଲିଥାଏ – ଏମିତି ଗପୁଡ଼ି ସେ କେବେ ବି ନଥିଲା ।

"ଏଥର ଦୂର୍ଗାପୂଜାରେ ଅଷ୍ଟମୀ ରାତିରେ ମେଲୋଡ଼ି ଚାଲିଲା ଯେ ଚାଲିଲା – ରାତି ଗୋଟେ ଉପରେ ହବଣି । ଆମ ଶୋଇବା ଘର ବାରଣ୍ଡାରୁ ମେଢ଼ ଦେଖାଯାଏ । ମୋତେ ନିଦ ହଉନଥିଲା । ଗାୟକ ଜଣକ ପୂରା ଦମ୍ ଲଗେଇ ଗାଇ ଚାଲିଥାନ୍ତି – "ଝୁମୁକା ଟିକେ ତୁ ତ ହଲେଇ ଦେ, ରୁମ୍ ଝୁମ୍ କରି ଟିକେ ବଜେଇ ଦେ – ବଜେଇ ଦେ – ବଜେଇ ଦେ – ବଜେଇ ଦେ-ମଝିରେ ମଝିରେ କହୁଥାନ୍ତି, କମ୍ ଅନ୍, ସିଙ୍ଗ୍ ୱିଥ୍ ମି, ଡାନ୍ସ ୱିଥ୍ ମି – ବେଣୀ ତୋ ହଲିବ ମନ ମୋ ନାଚିବ...

ମୋର ଦେଖିବାକୁ ମନ ହେଲା, ଏତେ ରାତି ହେଲାଣି କେତେ ଦର୍ଶକ ଅଛନ୍ତି । ମୁଁ ବାରଣ୍ଡାକୁ ଯାଇ ଦେଖିଲି, ଜଣେ ହେଲେ ଦର୍ଶକ ନ ଥିଲେ । ଆୟୋଜକମାନେ ବି ଯେଝା ଘରକୁ ଯାଇସାରିଲେଣି । ଖାଲି ପାଖ ଦୋକାନ ପିଲାଟି ଯିଏ ସବୁ ଦିନେ ମଦ ପିଇ ଦୋକାନ ବାରଣ୍ଡାରେ ଶୁଏ ଚାରିକାତ ମେଲେଇ ଶୋଇଥାଏ । ଆଲୁଅବତିର ଧପ୍ ଧପ୍ ଆଲୁଅରେ ମାଆ ଦୁର୍ଗାଙ୍କ ମୁହଁ ଦିଶୁଥାଏ ଦିବ୍ୟଉଜ୍ଜ୍ୱଳ ।"

ଶ୍ରୀ ଟିକେ ଚୁପ୍ ରହି ମୋତେ ଏକ ଦୃଷ୍ଟିରେ ଅନେଇଲା । ସେ ପୁଣି ମନକୁ ମନ ହସି କହିଲା, "ଏଥର ଆମର ମହିଷାସୁର ବିଶେଷ ଆକର୍ଷଣ । ଶିଳ୍ପୀ ଜଣକ କଲାବେଳେ ମହିଷାସୁର ବାଳକୁ ଆଜିକାଲିର ସ୍ପାଇକ୍ ଢ଼ଙ୍ଗରେ କାଟି ସେଥିରେ

ନାଲି ନୀଳ ରଙ୍ଗ ହାଇଲାଇଟ୍ ବି ଦେଇଥିଲେ । ଜଣେ ଭଦ୍ରମହିଳା ତାଙ୍କ କଲେଜ ପଢୁଆ ପୁଅକୁ କହିଲେ, "ଦେଖ୍, କେମିତି ମହିଷାସୁର ବାଳକଟା ହେଇଛି, ତୁ ସେମିତି କାଟିଚୁ । ଗଣେଶ, କାର୍ତ୍ତିକଙ୍କର କେମିତି କଳା ମଚମଚ ବାଳ, ପାତେଇକି କୁଣ୍ଡା ହେଇଛି, ନୁଖୁରା ଫୁରୁଫୁରୁ ହେଇକି ଉଡୁନି । ଆଉ ଦିନେ ତୁ ଯଦି ଏମିତି ସ୍ପାଇକ୍ କାଟିବୁ - ଅସୁରଟେ ଭଳି ଦିଶୁଛୁ ।"

"ମାଆ, ଏଇଟା ଆଜିକାଲିର ଫେଶନ, ତୁମେ ବୁଝୁନ ।"

"ମୋର ବୁଝିବା ଦରକାର ନାହିଁ ଅସୁର ଫେଶନ ।"

"ସାମାନ୍ୟ ବାଳକଟାରୁ ମୁଁ ଅସୁର ହେଇଗଲି? ମାଆ ତୁମେ ବି..."

ଶ୍ରୀ ମୋତେ ଗୃହିଁ ପଗ୍ଟରିଲା, "ଆଚ୍ଛା କୁହ ତ ଆମେ କାହାକୁ ଦେଖିଲେ ସାଙ୍ଗେ ସାଙ୍ଗେ ଗୋଟେ ଧାରଣା କରିନିଅନ୍ତି—ଇଏ ଏମିତି ଚୁଟି କାଟିଛି, ଇଏ ଦେବୋପମ; ଇଏ ସେମିତି ଜାମା ପିନ୍ଧିଛି, ତାର ଅସୁର ସ୍ୱଭାବ । ଅନ୍ୟ ଜଣକୁ ବୁଝିବା କଅଣ ଏତେ ସହଜ? ମୋର ତ ମନେ ହେଉଛି, ଯେଉଁମାନଙ୍କର ସ୍ୱାର୍ଥପରତା, ହିଂସ୍ରତା ବା ଅଭଦ୍ରାମୀ ସ୍ପଷ୍ଟ ସେମାନଙ୍କ ସହ କାରବାର କରିବା ସହଜ । ସେମାନଙ୍କୁ ବୁଝିବାରେ ମୁଣ୍ଡ ଆଉ ସମୟ ଖଟେଇବା ଦରକାର ନାହିଁ । କେଉଁ ପରିସ୍ଥିତିରେ ସେମାନେ କେମିତି ବ୍ୟବହାର କରିବେ ଅନୁମାନ କରିବା ସହଜ । କିନ୍ତୁ ଯେଉଁମାନେ ବ୍ୟବହାରରେ ଶହେରୁ ଶହେ, ସମ୍ଭ୍ରାନ୍ତ ଦିଶୁଥିବେ, ବେହିସାବି ମନେ ହେଉଥିବେ ଅଥଚ ଅନ୍ତନାଳୀରେ ଟିକିନିଖି ହିସାବକିତାବ - ସେମାନେ ମଣିଷକୁ କେତେବେଳେ କୋଉଠି ନେଇ ପକେଇବେ କଳନା କରିବା ମୁଶ୍କିଲ ।" ଯ୍ୟା କହି ସେ ଆଖି ନଚେଇ ରହସ୍ୟ କରି କହିଲା, "ମୁଁ ଏବେ ତୁମ ମୋ କଥା ଭାବିବା ବନ୍ଦ କରିଦେଇଛି । ଦେଖୁଛ ତ, ମୁଁ କେମିତି ଗହନ କଥା ସବୁ ଭାବୁଛି?"

ଶ୍ରୀ ଗୋଟେ ଲମ୍ବା ନିଶ୍ୱାସ ନେଇ କହିଲା, "ତୁମେ ଗୋଟେ ଗୀତ ଗାଉନ ।"

ମୁଁ ମୁଣ୍ଡ ହଲେଇ ମନା କଲି ।

"ତୁମେ କଣ ଆଜି ମୌନବ୍ରତ ରଖିଛ? କିଛି କହୁନ? ହଉ ହେଲା । ମୁଁ ଗୋଟେ ଗୀତ ଗାଉଛି, ଶୁଣ ।"

"କି ଗୀତ," କଅଣ ଗୋଟେ କହିବାକୁ ଯାଇ ମୋ ପାଟିରୁ ବାହାରିଲା ।

"ଅନ୍ଧାର ରାତିର ଆକାଶ ତଳେ ସମୁଦ୍ର ଗାଏ ଯୋଉ ଗୀତ..."

ସେ ଗୁଣୁ ଗୁଣୁ କରି କଅଣ ଗାଇଲା, ମୁଁ ନିଜ ଚିନ୍ତାରେ ଏତେ ବୁଡ଼ିଥିଲି ଯେ କିଛି ଶୁଣି ବୁଝିପାରିଲିନି ।

ଗୁଣୁଗୁଣେଇ ସାରି ସେ ହସିଲା, ଲିଭି ଯିବାର ନିଶ୍ଚିତତାକୁ ମାନି ନେଇଥିବା ନିର୍ଲିପ୍ତ ଦୀପ ଶିଖା ପରି ତା ଆଖି ଯୋଡ଼ିକ ଉଜ୍ଜ୍ୱଳ ଦିଶିଲା ।

"ତୁମ କାର୍ଯ୍ୟକ୍ରମ ବହୁତ ଭଲ ହେଲା ଶୁଣିଲି," ମୁଁ କଥା ବଦଳାଇବାକୁ କହିଲି । ନିକଟରେ ଦୂରଦର୍ଶନରେ ତାର ନୃତ୍ୟ ପରିବେଷଣ ପ୍ରସାରିତ ହେଇଥିଲା ।

"ମୁଁ ନା ପିଲା ଦିନେ ଯେତେବେଳେ ନାଚ ଶିଖୁଥିଲି ଭାବୁଥିଲି — ମୁଁ ମନ ଦେଇ ସବୁଦିନେ ଅଭ୍ୟାସ କରିବି, ବହୁତ ଭଲ ନାଚିବି, ମୋ ନାଚ ଦେଖିକି ସମସ୍ତେ ଖୁସି ହେବେ । ମୋତେ ବଡମାନଙ୍କଠୁଁ ସ୍ନେହ ମିଳିବ, ଆଦର ମିଳିବ... ସେମାନେ ମୋ ଆତ୍ମସମ୍ମାନବୋଧକୁ ଆଘାତ ଦେବେନି... ସାନ ପିଲାଟେ ଆଉ କଅଣ ଭାବିପାରିଥାନ୍ତା ଯେ?"

ଏଇନା ଶ୍ରୀର ଆଖି ମୋ ଉପରେ ପଡ଼ିଲା । ମୁଁ ତା ଆଖିରେ କଅଣ ଦେଖିଲି – ରାଗ, ଅନୁରାଗ, ପଶ୍ଚାତାପ, ନିର୍ମୋହ? ତାର ସେଇ ଢ଼ଳଢ଼ଳ, ଅନବଦ୍ୟ ଆଖିରେ ମୁଁ କଅଣ ଦେଖିଲି? ସେ କଅଣ ମୋ ପାଖକୁ ଆସିବ, ଭଲମନ୍ଦ ପଚାରିବ? ନ ଆସିଲେ ଭଲ, ତା ସହ କଥା ହେବାର ସାହସ ଟିକକ ମୋର ନାହିଁ । କିନ୍ତୁ ସେ ମୋ ଭଳି ନିଉଛଣା ନୁହେଁ, ଶିଷ୍ଟାଚାର ଖାତିରରେ ନ ଆସିବ କାହିଁକି? ମୁଁ ଟିକେ ବିବ୍ରତ ହେଇ ତା ଆଡ଼କୁ ଚାହିଁଲି । ସେ ତାର ଟଣାଟଣା ଭ୍ରୂ ଉଠାଇ ଆଖି ଉପର ତଳ କରି ଯେମିତି କହିବା ପରି ମନେ ହେଲା — "ତୁମଠୁଁ ଦୂରରେ ମୁଁ ଶାନ୍ତିରେ ଅଛି । ତୁମ ଯୋଗୁଁ କି ଦୁଃଖ ପାଇଲି, ମୁଁ କଅଣ ତାର ହକ୍‌ଦାର ଥିଲି? କେବେ ଥରେ ଭାବିଛ ଖରାବର୍ଷାରେ ଝିଅଟେ ତୁମ ପାଖକୁ କାହିଁକି ଦୌଡ଼ି ଆସୁଥିଲା? ଛାଡ଼ ସେ କଥା, ମୁଁ ଶାନ୍ତିରେ ଅଛି । ମୁଁ ଯେ ତୁମଠୁଁ ଭଲ ପାଇବାର ପ୍ରତ୍ୟାଶା ରଖୁଥିଲି ସେଥିପାଇଁ ନିଜକୁ କ୍ଷମା କରିଦେଇଛି ।"

(ଏହି ପରୀକ୍ଷାଧର୍ମୀ ଗଳ୍ପଟି ଲେଖକଙ୍କର ଉପନ୍ୟାସ "ଅସମାପ୍ତ" ଉପରେ ଆଧାରିତ ଏବଂ ଦୈନିକ "ସମ୍ବାଦ" ରବିବାର ସାହିତ୍ୟ ପୃଷ୍ଠାରେ ୨୦୧୯-୨୦୨୨ ମଧ୍ୟରେ ପ୍ରକାଶିତ । ଉପନ୍ୟାସ "ଅସମାପ୍ତ" ଦୈନିକ ସମ୍ବାଦପତ୍ର "ସେଇଠୁ ଆରମ୍ଭ"ର ରବିବାସରୀୟ ସାହିତ୍ୟ ଫର୍ଦ୍ଦରେ ନଭେମ୍ବର ୨୦୨୨ ଠାରୁ ଧାରାବାହିକ ରୂପେ ପ୍ରକାଶ ପାଉଛି ।)



# ପୈତୃକ ସମ୍ପତ୍ତି

ବାସୁଦେବପୁର ପୋଲମୁଣ୍ଡରେ ଧାନକଳ । ଜାତୀୟ ରାଜପଥ ପାଖରୁ ତଳକୁ ସଡ଼କଟିଏ ଗଡ଼ିଯାଇଛି ଗାଁ ଭିତରକୁ । ଗୋଟେ କଡ଼ରେ ତେଲଭଜି ଦୋକାନ, ସାଇକେଲ ମରାମତି ଦୋକାନ—ପାଖାପାଖି ଦୁଇଟି ଚାଳଛପର ଘର । ଆଗରେ ଦଉଡ଼ି ଖଟିଆ ଦିଟା ଗରାଖଙ୍କ ଖାତିରରେ । ସାମ୍ନାରେ ଟିକେ ଦୂରରେ ଧାନକଳ ବୋଇଲେ ଦୁଇ ବଖରା କୋଠାଘର । କଳ ଗୋଟେ ଘରେ; ଆଉ ପାଖଟା ଗୋଦାମ ।

କଳଘର ଆଗରେ ଗୋଟେ ଖଟିଆରେ ହଳିଆ ଗଡ଼ୁଛି । ଅପରାହ୍ନ ସୂର୍ଯ୍ୟର ନରମ ସୁନେଲି ଖରା ବିଛେଇ ପଡ଼ିଛି ହଳିଆ ମୁହଁ ଉପରେ — ହାଲୁକା ଖରାକୁ ହାତରେ ଆଡ଼ କରି ସେ ଶୋଇଛି ।

ମଧୁଆ ସଡ଼କ ଉପରେ ସାଇକେଲ ଛୁଟେଇ ଯାଉ ଯାଉ ପାଟିଟେ ପକେଇଲା — "ହୋ, ହଳିଆଭାଇ, କିହୋ ଦିନ ଗଲାଣି, ଏ ଅବେଳଟାରେ ତୁଚ୍ଛାଟାକୁ ଶୋଇଛ କିଆଁ ?"

ପାଟି ଶୁଣି ହଳିଆ କଡ଼ ଲେଉଟାଇ ସଡ଼କ ଆଡ଼େ ଚାହିଁଲା — "କିଏ, ମଧୁଆ କିରେ ? ଆସୁନୁ ?"

"ନାଁ ବା ।  ଏବେ ଟିକେ ବଜାର ବାହାରିଚି । କାଲି ଧାନ ନେଇ ଆସିବି ସକାଳୁ, ଥିବଟି ?"

"ନ ଥିବି ଆଉ କୁଆଡ଼େ ଯିବି ?"

ମଧୁଆ ଆଗେ ଏଇ କଳଘରେ ବୋଲହାକ କରୁଥିଲା । ବର୍ଷେ ହବ

ବଜାରରେ ମୋବାଇଲ କାଚ ଆଉ କଭର ଦୋକାନଟେ ପକେଇଛି । ପିଲାବେଳୁ ବାପଛେଉଣ୍ଡ । ତା ମାଆ ଚୁଡ଼ାକୁଟି, ଯା ଘରେ ତା ଘରେ ଧାନ ଉଁସେଇ ସଂସାର ଚଳାଏ । ମଧୁଆ କଳା ମଚମଚ ନହକା ଟୋକା, ହସହସ ମୁହଁ, ନିର୍ମାୟା ମନ ।

ଧୀରେ ଧୀରେ ସୁର୍ଯ୍ୟ ବୁଡ଼ିବା ବୁଡ଼ିବା ହେଲେ । ଗାଁ ଉପରେ ସନ୍ଧ୍ୟା ନଇଁ ଆସିଲା, ପୂର୍ବ ଆକାଶରେ କଅଁଳା ଜହ୍ନ ମୁହଁ ଦିଶିଲା । କାର୍ତ୍ତିକ ପୂର୍ଣ୍ଣିମାକୁ ଦିନା କେତେ ବାକି ଅଛି ।

ରଘୁ ସାହୁ ଦୋକାନ ଆଗରେ ଭିଡ଼ । ଦୋକାନ ଆଗ ଖଟିଆରେ ବସିବା ଲୋକ ସେଇ ଗାଁର କିଛି ବୁଢ଼ା ଦରବୁଢ଼ା । ଏଠି ଗୋଟେ ରୀତିମତ ଖଟି ଚାଲେ ଅଧରାତି ଯାଏ, ନାଁ ଖରା, ନାଁ ବର୍ଷା, ନାଁ ଶୀତ । ଢିଙ୍କିଶାଳରୁ ଢେଙ୍କାନାଳ କଥା ସରେନା । ଯଦିଓ ଲୋକ କହୁଛନ୍ତି ଯା ଭିତରେ ଯୁଗ ବଦଳିଯାଇଛି, ଏଠି ଘଡ଼ିଏ ବସିଲେ ସବୁ ଯୁଗ କେମିତି ଗୋଳିଆ ମିଶା ହେଇ ଏକାଠି ରହିପାରେ ଅକ୍ଳେଶରେ ବୁଝାପଡ଼ିବ । ସାହୁ ଦୋକାନରେ ମିଳେ ଚାହା, ଆଳୁଚପ୍, ବରା, ଘୁଗୁନି । ରାତିରେ ରୁଟି, ଅଣ୍ଡା ତରକାରୀ ଯଦି ରାଜପଥର ଟ୍ରକ ଚାଳକ କେହି ଆସି ହାଜର ହୁଅନ୍ତି । କିନ୍ତୁ ସନ୍ଧ୍ୟାରେ ଗରମ ଚାହା ସାଙ୍ଗରେ ଯୋଉ କଥା ଜମେ ନା — ହଳିଆ ବି ସେଠି ନିୟମିତ ବସେ । ଏ ସମୟରେ ପ୍ରାୟ କେହି ଧାନ ପେଡ଼େଇବାକୁ ଆସନ୍ତିନି । ସକାଳୁ କେହି କେହି ଦେଇକି ଯାଇଥାନ୍ତି ହୁଏତ ନବାକୁ ଆସନ୍ତି । କିନ୍ତୁ ଗଲା କିଛି ଦିନ ହେଲା ସେ ସେଠିକି ଯାଇନି । ଗଲେ ବୁଲେଇ ବଙ୍କେଇ ତାକୁ ସେଇ ଘର ଅଶାନ୍ତି, ସାନ ଭାଇ ଚକରା କଥା ପଚାରିବେ । ସେ କଥା ଭାବି ତ ସେ ଏମିତି ବିଷଣ୍ଣ ଓ ଚିନ୍ତିତ ।

ଏଇ ବାସୁଦେବପୁର ଧାନକଳ ପୁରୁଣା । ଖାଲି ବାସୁଦେବପୁର ନୁହେଁ, ଆଖପାଖ ଗାଁଲୋକ ଧାନ ପେଡ଼ିବାକୁ ଏଠିକି ଆସନ୍ତି  । କିଏ ଧାନବସ୍ତା ପିଠିରେ, କିଏ ଟ୍ରଲିରିକ୍ସାରେ ତ କିଏ କେବେ କେମିତି ଶଗଡ଼ରେ ଲଦିକି ଆଣେ । ଧାନକଳର ମାଲିକ ହଳିଆର ନନା ନରହରି ମିଶ୍ର ମରିବା ଆଜିକୁ ବହୁବର୍ଷ । ସେତେବେଳେ ଏଇ ହଳିଆକୁ ମୋଟେ ପନ୍ଦର କି ଷୋହଳ ବର୍ଷ । ନରହରି ମିଶ୍ର ନିଜ ବଡ଼ ଝିଅଟିକୁ କେବଳ ବିଭା ଦେଇଥିଲେ । ହଳିଆ ତଳେ ଆଉ ଗୋଟେ ଭାଇ, ଚାରି ଭଉଣୀ । ଜମି ବିକି ଦୁଇଟିକୁ ବିଭା ଦେଇଛି ହଳିଆ । ତା ନିଜ ବାହାଘର ଭେଜି ଶ୍ୱଶୁର ଘରୁ ଯୋଉ ଟଙ୍କା ମିଳିଥିଲା ସେଥିରେ ଉଠିଲା । ଗୋଟେ ଝିଅ, ଦିପୁଅ । ଝିଅ ସରକାରୀ ମହାବିଦ୍ୟାଳୟରେ ପଢ଼େ । ବଡ଼ ପୁଅ ମାଧମିକ ଦିଥର ଦେଲାଣି । ଏଥର ସାନପୁଅ ସାଥିରେ ପୁଣି ପରୀକ୍ଷାରେ ବସିବ । ରଜ

ସାବିତ୍ରୀ, ତିନିଭଉଣୀ ଘରକୁ ଭାର ବେଭାର, ନିଜ କୁଟୁମ୍ବ ଚଳେଇବାରେ କଷ୍ଟ ନାହିଁ । କିନ୍ତୁ ହାନିଲାଭକୁ ଯାହା କଳଘରଟି ସାହା ।

ସାନଭାଇ ଚକରା ଓରଫ୍ ଚକ୍ରଧର ମିଶ୍ର । ସେ ଭୁବନେଶ୍ୱରରେ ଚାକିରି କରେ । ଉଚ୍ଚମାଧ୍ୟମିକ ପରୀକ୍ଷା ଦେଇ ଗାଁରେ ବୁଲୁଥିଲା, ଏଠିସେଠି ବସି ତାସ୍ ଖେଳୁଥିଲା, ଗାଁ ମାମଲତକାର ବନୁଥିଲା । ଭାଗ୍ୟକୁ ସଂପର୍କୀୟ ପିଉସା ଭୁବନେଶ୍ୱର ନେଇଗଲେ । ଚକରା ରାତ୍ରି ଶ୍ରେଣୀରେ ନାଁ ଲେଖେଇ, ସ୍ନାତକ ଯେନତେନ ପ୍ରକାରେଣ ଡେଇଁ ନିଜ ପାଇଁ ଗୋଟେ ସରକାରୀ ଦପ୍ତରରେ କିରାଣି ଚାକିରି ଯୋଗାଡ଼ କଲା । ସେଇଠି ଆଗରୁ କିରାଣି ଥିବା ଝିଅ ସରିତାକୁ ଠିକ୍ କରି ବାହା ହେଇପଡ଼ିଲା । ଜାତି ଏକା, ତେଣୁ ବାହାଘରରେ ଦୁହିଁଙ୍କ ପରିବାରର ଅମତ ନ ଥିଲା । ସରିତାର ବାପା ସେହି ସରକାରୀ ବିଭାଗରେ ସଚିବାଳୟରେ ଉଚ୍ଚପାହ୍ୟାରେ ଥିଲେ । ତାଙ୍କୁ ଧରି ଚକରା ଖୁବ୍ ଶୀଘ୍ର ପଦୋନ୍ନତି ପାଇଲା । ଚକରା ସ୍ତ୍ରୀ ବାହାଘର ପରେ ଥରେ ଅଧେ ଗାଁକୁ ଆସିଛି । ତାର ଗୋଟେ ପୁଅ ରାଜଧାନୀରେ କୋଉ ଇଂରାଜୀ ମାଧ୍ୟମ ସ୍କୁଲରେ ପଢ଼େ । ଚକରା ଗାଁକୁ ଆସିଲେ ଖାଲି ନିଜର ବଡ଼ିମା ଗପେ । କେମିତି କଷ୍ଟରେ ପ୍ରଥମ ତିନି, ଚାରି ବର୍ଷ ଗଲା, କେତେ ବଡ଼ ବଡ଼ ଲୋକଙ୍କୁ କେମିତି ସେ ଧରାଧରି ଖୋସାମଦ କରିଛି ଇତ୍ୟାଦି, ଇତ୍ୟାଦି । ଏବେ ନୂଆ ନୂଆ ଜମିବାଡ଼ି କାରବାରରେ ହାତ ଦେଇଛି । କାଳେ ଚନ୍ଦକାର ଫାଳେ ତାର । କେତେ ଲୋକଙ୍କୁ ଜମି ଦେଇ ସେ ଏବେ ମାଲାମାଲ; ରାଜଧାନୀର ବଡ଼ବଡ଼ିଆଙ୍କ ସାଙ୍ଗରେ ବସି ବିଦେଶୀ ପିଉଛି । ଏମିତି କେତେ କଥା ସେ ଚିହ୍ନାଲୋକ ପାଇଲେ ହିଁ ଗପେ । ତା ସ୍ତ୍ରୀ ଟିକେ ମୁଖରା, ହେଲେ କଅଣ ହେଲା ? ତାକୁ ବାହାହେବା ପରେ ହିଁ ତା ଭାଗ୍ୟରେଖା ଫିଟିଛି ।

ସନ୍ଧ୍ୟା ଅନ୍ଧାର ବହଳ ହେଲା । କୁହୁଡ଼ିର ଓଢ଼ଣା ତଳୁ ମିଞ୍ଜି ମିଞ୍ଜି ଆଲୁଅ, ସନ୍ଧ୍ୟା ଆରତି ଶଙ୍ଖଧ୍ୱନୀ, ସଡ଼କ ବାଟୋଇଙ୍କ ଅସ୍ପଷ୍ଟ କଥା, ଝିଙ୍କାରି ଝିଁ ଝିଁ — ଗାଁ ନୁହେଁ ସତେ ଯେମିତି ଗୋଟେ କୁହୁକ ରାଇଜ । ହଳିଆ କଳଘର ତାଲା ଦେଇ ଗାଁ ଭିତରକୁ ଗୋଟେ ଗୋଟେ ପାଦ ବଢ଼େଇଲା ।

ଘରକୁ ଗଲେ କୋଉ ଶାନ୍ତି ? ତା ସ୍ତ୍ରୀ ଆଉ ମାଆ ଭିତରେ ସବୁବେଳେ କଥା କଟାକଟି । ତା ସ୍ତ୍ରୀ ସାନ ନଣନ୍ଦ ଦିଟାଙ୍କ ଛାଇ ମାଡ଼େନା, ଆଉ ସେ ଦିଟା ବି କୋଉ ଭାଉଜକୁ ସମ୍ମାନରେ ପୋତିପକାନ୍ତି ? କେହି କାହାକୁ କମ୍ ନୁହଁନ୍ତି । ଆଜିକାଲି କାହାକୁ ପଦେ କହିଲେ ମାଡ଼ି ଆସୁଛନ୍ତି ମୁହଁରେ ମୁହଁ ପକେଇବାକୁ । ପିଲେ ବଡ଼ ହେଲେଣି, ସ୍ତ୍ରୀ ବି ଆଉ କୋଉ ଦବୁଛି ତା କଥାରେ ? ସ୍ତ୍ରୀର

ସବୁବେଳେ ଗୋଟେ କଥା — "ଭଲ ମନ୍ଦ ହାନିଲାଭକୁ ତ ଆମେ କରିବା, ଆଜି ଭଣଜା ବ୍ରତଘର, ତୁମେ ଦୌଡ଼ିବ । କାଲି ବଡ଼ନାନୀ କକେଇଶ୍ୱଶୁର ଏକାଦଶାହ, ତୁମେ କାମଦାମ ଛାଡ଼ି ବେଭର ନେଇଯିବ । ମାଆ ତୁମ ନାଁରେ କଳଘରଟା କରିଦେଲେ କ୍ଷତି କଅଣ? ସେମାନେ ଦିଜଣ ତ ସରକାରୀ ଚାକିରିଆ ।"

ପ୍ରଥମେ ପ୍ରଥମେ ହଳିଆ ସ୍ତ୍ରୀ କଥାକୁ ଗୁରୁତ୍ୱ ଦେଉନଥିଲା: "ହେଃ, ସବୁବେଳେ ବାଜେ କଥା । ତୁମ କାମ ଘର ସମ୍ଭାଳିବା, ଏସବୁ କଥାରେ ତୁମର ମୁଣ୍ଡ ଖେଳେଇବା ଦରକାର ନାହିଁ ।"

କିନ୍ତୁ ଧୀରେ ଧୀରେ ହଳିଆ ଦେଖିଲା, ତା ବୟସ ବଢ଼ୁଛି, ପିଲାଙ୍କ ପାଇଁ ଖର୍ଚ୍ଚ ବଢ଼ୁଛି । ମାଆ ତା ନାଁରେ କଳଘର କରିଦେଲେ କ୍ଷତି କଅଣ? ଚକରାର ତ କିଛି ଅଭାବ ନାହିଁ । ସ୍ୱାମୀସ୍ତ୍ରୀ ଦିଜଣଙ୍କର ସରକାରୀ ଚାକିରି, ଅବସର ପରେ ବି ପାଉଥିବା ଦରମାର ଅଧା ଟଙ୍କା ଭତ୍ତା ପାଇବେ । ତା ସ୍ତ୍ରୀର ଭାଇ ନାହାନ୍ତି । ଶ୍ୱଶୁର ଘର ସମ୍ପତ୍ତି ବେଶ୍ କିଛି ପାଇବ । କହୁଚି ଏଠୁ ତା ଭାଗ ଜମି ବିକି ଭୁବନେଶ୍ୱରରେ ବ୍ୟବସାୟରେ ଖଟେଇବ । ଗାଁଲୋକଙ୍କ ଆଗରେ ଚକରା ନିଜେ ବାହାସ୍ଫୋଟ ମାରୁଚି, ମୋତେ ପଚାଶ ପଞ୍ଚାବନ ହେଲାବେଳକୁ ମୁଁ କୋଟିପତି ହେଇ ବୁଲିବି । ହଉ, ଈଶ୍ୱର କରନ୍ତୁ କୋଟିପତି ହଉ । ହେଲେ ପିଲାଟି ବେଳୁ ସବୁ ଦାୟିତ୍ୱ ମୋର; ଚକରା କେବେ ଘର, ବନ୍ଧୁବାନ୍ଧବ କଥା ବୁଝିଚି ନା ବୁଝିବ? ମାଆକୁ ମୋ ନାଁରେ କଳଘରଟା କରିବାକୁ କହିବା କଅଣ ଅନ୍ୟାୟ ହେବ? ମାଆ କୋଉ ସହଜରେ ମାନିଯିବ? କିନ୍ତୁ କହି ଦେଖିଲେ କ୍ଷତି କଅଣ?

ଆଜିକାଲି ବହୁତ ସମୟରେ ଏମିତି ସବୁ ଭାବନା ହଳିଆକୁ ବିବ୍ରତ କରେ । ଦିନରେ କଳଘରେ କାମକଲା ବେଳେ, ସଡ଼କରେ ଚାଲୁଚାଲୁ, ଯେମିତି ଏଇ କଥା ଛଡ଼ା ଆଉ କିଛି କଥା ନାହିଁ — ଏକୁଟିଆରେ ସେଇ କଥା ମନକୁ ଆସେ, ଭିଡ଼ରେ ବି ସେଇ ଏକା କଥା । ପ୍ରଥମେ ପ୍ରଥମେ ସେ ମୁଣ୍ଡଟା ହଲେଇ ଦଉଥିଲା, ଗୋଟେ ତେଲୁଗୁଣି ପୋକ ତା ଦେହରେ ଚଢ଼ିଗଲେ ତାକୁ ଝାଡ଼ିଦେଲା ଭଳି । କିନ୍ତୁ ଆସ୍ତେ ଆସ୍ତେ ତାର ମନେ ହେଲା ଯେମିତି ତା ମୁଣ୍ଡ ଭିତରଟା ସେଇ ମଳିଛିଆ ନାଲି କୁରୁପି ତେଲୁଣି ପୋକ ସାଲୁବାଲୁ ।

ସେଦିନ ହାଟ ପାରି । ହଳିଆ ସାଙ୍ଗରେ ତା ମାଆ ବି ବାହାରିଲେ ବିଲକୁ ବିଲାତି ତୋଳି । ଏସନ ବିଲାତି କିଆରିରେ କିଏ ଯେମିତି ଲାଲ୍ ସତରଞ୍ଜିଟିଏ ପାତିଦେଇଛି । ଏତେ ବିଲାତି ମୁଲିଆ ଡ଼ାକି ତୋଳି, ହାଟକୁ ପଠେଇଲେ ଲାଭ ଗୁହାଳକୁ ଧାଇଁବ । ତ ମାଆ ପୁଅ କିଆରିରୁ ବିଲାତି ତୋଳୁ ତୋଳୁ ହଳିଆ କଥାଟା ପକେଇବାକୁ ଚେଷ୍ଟା କଲା ।

"ଏ ବର୍ଷ ବଡ଼ନାନୀ କଅଣ ତା ଝିଅ ବିଭାଦେବ?" ହଳିଆ ପାକଳ ବିଲାତିଟେ ଛିଡ଼ଉ ଛିଡ଼ଉ ନିଜ ସ୍ୱରକୁ ଯଥା ସମ୍ଭବ ସ୍ୱାଭାବିକ ରଖି ପଚାରିଲା ।

"ହଁ, ଖୋଜୁଛି ତ? କୋଉଠି ଭଲ ପ୍ରସ୍ତାବ ମିଳିଲେ ପୁଣି ତ?"

"ବଡ ଭଣିଜୀ, ଭଣିଜୀ ଜୋଇଁକୁ କଅଣ ପୁଣି ଦେବାକୁ ପଡ଼ିବ ତ । ଭାବିଛୁ?"

"ମୁଁ କଅଣ ଭାବିବି ରେ? ତୁ ଆଉ ଚକରା ଯାହା ଠିକ୍ କରିବ ।"

"ଚକରା?" ହଳିଆ ସ୍ୱରରେ ବିରକ୍ତି ସ୍ପଷ୍ଟ ବାରି ହୋଇ ପଡ଼ିଲା, "କେବେ କିଛି ଦେଇଛି ନା ଦେବ?" ଏତକ କହି ତା ମାଆ ଆଡ଼େ ଗ୍ରହିଁଲା । ମାଆ ମୁହଁ ବୟସ ରେଖାର ଭିଡ଼ ଭିତରୁ ତା ମନର ଭାବ ସଠିକ୍ କିଛି ଠଉରେଇ ପାରିଲାନି ।

"ଚକରା କଅଣ କହୁଥିଲା ତା ଭାଗ ଜମି ବିକିବ?"

"କାଇଁ, ମୋତେ ତ ସେ କିଛି କହିନି ।" ହଳିଆ ମାଆ କଥାର ଖିଅ କୁଆଡ଼େ ଯାଉଛି ହେଜିଲେ, ଆଉ କହିଲେ, "ତା ଭାଗ ସେ ଯଦି ନବାକୁ ଗ୍ରହିଁବ, କିଏ କଅଣ କହିବ? ଦିନେ ତ କାହା କଥା ସେ ଭାବିନି । ପାଞ୍ଚବର୍ଷ ହେଲାଣି ମୁଁ ତାକୁ ମାଗୁଚି ମୋତେ ଟଙ୍କା ଦଶ ହଜାର ଦେ, ତୀର୍ଥରେ ଦକ୍ଷିଣ ଭାରତ ବୁଲିଯିବି । କେତେ କୁଆଡ଼େ ଗାଁଲୋକ ବୁଲି ଯାଉଛନ୍ତି । ହଁ ଦେବି ଦେବି କହି ଦଉନି । ଆସୁ ଏଥର, ବଡ଼ନାନୀ ଝିଅ ବାହାଘର କଥା ଉଠେଇବି । ଦେଖି କଅଣ କହୁଛି ।"

ହଳିଆ ଦେଖିଲା ତା ମାଆ ବି ସହଜରେ ଧରାଦେବା ଜନ୍ତୁ ନୁହେଁ । ଦିବର୍ଷ ହେଲା ଦୁହାଁଳ ଗାଈ ରଖିଛି, କ୍ଷୀର ବିକି ଯା ପଇସା ପାଉଛି ନିଜେ ମୁଠା କରୁଛି । ଦିନେ କଅଣ ବାହାର କରୁଛି? ଗଲାମାସ ସାନ ପୁଅଟାର ଦେହ ଖଇ ଫୁଟୁଥିଲା, ରଘୁ ବଇଦ କହିଲେ, "ନେଇଯା ମଧୁପୁର ବଡ଼ ଡ଼ାକ୍ତରଖାନା, ଟାଇଫଏଡ୍ କି କଅଣ ।" ହଳିଆ ହାତରେ ମୋଟେ ଦଶ ପଚାଶ ଟଙ୍କା । ମାଆକୁ ମାଗିଲାରୁ ସେ ସଫା ସଫା ମନାକଲା, "ମୋ ପାଖରେ କୋଉଠୁ ଆସିବ? ଯାହା ପଇସା ପାଉଛି ତୋରି ପିଲାଙ୍କ ତେଲଭାଜି ହାତଖର୍ଚ୍ଚ, ମୋ ଔଷଧକୁ ନିଅଣ୍ଟ ।" ହଳିଆ ସାହୁ ଦୋକାନରୁ ପାଞ୍ଚଶହ ଟଙ୍କା ଧାର୍ କରି ପୁଅକୁ ଡ଼ାକ୍ତରଖାନା ନେଇକି ଗଲା ।

ସେଦିନ ରାତିରେ ତା ସ୍ତ୍ରୀ କଅଣ ଆଉ ବିଷ ନ ଢ଼ାଳି ଶୋଇଥାନ୍ତା? "ଦେଖ, ତୁମ ମାଆ ଗୋଟେ ଟଙ୍କା ବାହାର କଲେ? କିଏ ମରୁ କି ବଞ୍ଚୁ, ତାଙ୍କର

ଯାଏ କେତେ ଆସେ କେତେ? ଏଥର ଚକରା ଆସିଥିଲେ, ମୁଁ ଗୃହା ନେଇକି ଗଲା ବେଳକୁ ମାଆ ତାଙ୍କ ହାତରେ ଟଙ୍କା ପାଁଶହ ଗେଞ୍ଜି କହୁଥିଲେ — ନେ, ତୋ ପୁଅର ଜନ୍ମଦିନ ଆସୁଛି, ନୂଆ ଜାମା କିଣିଦେବୁ । ତେଲିଆ ମୁଣ୍ଡରେ ତେଲ ଢାଳିବା ଗୁଣ ହଉଚି ତୁମ ମାଆଙ୍କର, ବୁଝିଲ ।"

ହଳିଆ ବି ମାଆର ଏ ଗୁଣ ଲକ୍ଷ୍ୟ କରିନି ନୁହେଁ, କିନ୍ତୁ କଅଣ କରିବ? ବେଳ ଅବେଳରେ ମାଆକୁ ଟାଣ କରି ଦି ଗୃରି ପଦ କହେନି ନୁହେଁ । ହଳିଆ ବୁଝିଛି ତା ମାଆ ନିର୍ବୋଧ ନୁହେଁ କି ତାକୁ ସାକୁଲେଇ କିଛି ହାସଲ କରିହେବନି । ଏକଥା ମନେ ପଡ଼ିବାରୁ ହଳିଆ ଟିକେ ଦବିଗଲା ।

ନାଁ, ଥାଉ — ହଳିଆ ମନକୁ ମନ ଭବିଲା ଆଉ ବିଲତି ତୋଳିବାରେ ମନଦେଲା ।

କିନ୍ତୁ ସ୍ତ୍ରୀଜାତି ମୁଣ୍ଡରେ ଯଦି କୋଉ କଥା ଥରେ ପଶେ ବାହାରିବା ମୁଶ୍କିଲ, ଲାଗିଥିଲେ ଲାଗିଥିବେ । ହଳିଆ ଯାହା କହିପାରିଲାନି, ତା ସ୍ତ୍ରୀ ପାରିଲା ।

ବଡ଼ନାନୀ ଶ୍ୱଶୁର କେମିତି ପାତର ଅନ୍ତର କରୁଛି, ଥିଲା ପୁଅକୁ ବେଶି ଟେକୁଛି, ଏମିତି ସବୁ କଥା ଦିନେ ପଡ଼ିଥିଲା ହାଣ୍ଡିଶାଳରେ । ହଳିଆମାଆ ରୁଟି ବେଲୁଛି, ହଳିଆ ସ୍ତ୍ରୀ କହିପକେଇଲା, "ସମସ୍ତେ ସେମିତି । ପରକୁ ଦୋଷ ଦେଲେ କଅଣ ହେବ? ତୁମେ ତ ନିଜେ ସଦାବେଳେ ଚକରା, ଚକରା ହୁଅ । ଆଉ ତୁମ ଝୁଅ ଶ୍ୱଶୁର କଥା କାହିଁକି କହୁଛ?"

"ମୁଁ ପାତର ଅନ୍ତର କରେନି । ଚକରା ଦିନେ କାଳେ ଆସୁଛି, ତାକୁ କଅଣ ଆଉ ଅନାଦର କରିବି? ଅନ୍ତଡ଼ିରୁ ଏଡ଼ିକିରୁ ଏଡ଼େ କଲି । ମୁଁ ମାଆ ନାଁ କଅଣ?" ହଳିଆ ମାଆ ଉତ୍ତର ଦେଲେ ।

"ହଁଅବା, ମୁଁ ତ ତୁମକୁ କହୁଛି ତୁମେ ତୁମ ପିଲାକୁ ଆଦର କରନା! ତା ବୋଲି କଅଣ ଦାୟିତ୍ୱ ଶିଖେଇବନି?" ବୋହୂ କଟାକ୍ଷ କରୁ କରୁ ରୁଟି ସେକିବାରେ ମନ ଦେଲା ।

"ସିଏ କଅଣ ଛୋଟ ପିଲା ହେଇଛି ମୁଁ ତାକୁ ଶିଖେଇବି?"

"ତା ବୋଲି ପଦେ କହିବନି? କହୁଛନ୍ତି, ଏଠୁ ତାଙ୍କ ଭାଗ ନେବେ, ବିକିବେ । ତାଙ୍କର କଅଣ ଅଭାବ, ତୁମେ କୁହ? ବିବେକ ବୋଲି କଅଣ ମଣିଷର କିଛି ନାହିଁ?"

"ତା ବାପ ସମ୍ପତ୍ତି, ସିଏ ନବ । ମୁଁ କଅଣ କହିବି ଏଥିରେ?" ହଳିଆ ମାଆ ବୋହୂ କଥାକୁ ଗୁରୁତ୍ୱ ନ ଦେଇ କହିଲେ ।

"ନାଁ ନାଁ ତୁମେ କଅଣ କରିପାରିବ? ତୁମେ ମୁହଁ ଖୋଲିବନି ।" ହଳିଆ ବୋହୂ ମୁହଁ ଛିଞ୍ଚାଡ଼ି କହିଲା, "ପଦେ କହିଲେ ତୁମ ଜିଭ ଛିଣ୍ଡିପଡ଼ିବ!"

ଶାଶୁ ଚୁପ୍ ରହିବାର ଦେଖି ପୁଣି ଯୋଡ଼ିଲା, "ଏଠି ତିନି ତିନିଟା ପିଲା । ଦିଟା ଭଉଣୀ ଆହୁରି ବାହାହେବେ । ବନ୍ଧୁ ଖୋଜାଲୋଡ଼ା ସବୁ ଆମେ କରିବୁ । ସୁବିଧା ଅସୁବିଧା ସବୁ ଆମେ ବୁଝିବୁ । କିନ୍ତୁ ଜମିବଣ୍ଟା ବେଳକୁ କଅଣ ନା ମୋର ଭାଗ ମୁଁ ନେବି । ଯାକୁ କହନ୍ତି ନିଉଛଣା ।"

ରଡ଼ ନିଆଁ ଭଳି କଥା ଗୁଡ଼ା ହଳିଆ ମାଆ ଦେହରେ ଗଳିଗଲେ ବି ସେ ଚୁପ୍ ରହିଲେ ।

ବୋହୂ ମୁହଁରେ ବାଟୁଳି ବାଜୁନି । "କଅଣ ନାଁ ମୋ ହାତରେ କଅଣ ଅଛି? ନ୍ୟାୟବନ୍ତ! କାହିଁକି ଜମି କଥା ଯଦି କହି ନ ପାରୁଛ ଗେହ୍ଲା ପୁଅକୁ, କଳଘରଟା ତୁମ ବଡ଼ ପୁଅ ନାଁରେ ଲେଖିଦେଉନ? ସେଟା ତ ତୁମ ହାତରେ ଅଛି ।"  ଏତକ କହି ବୋହୂ ମୁହଁ ମୋଡ଼ିଲା: "ଦେଖଲୋ ମାଆ, କଳିକାଳରେ ଯୁଜେଷ୍ଠି ।"

ବୋହୂ ରୁଟି ତରକାରି ଥାଳି ଶାଶୁ ଆଗରେ କଚାଡ଼ି ଦେଇ ଦୁମ୍ ଦୁମ୍ ହେଇ ଚାଲିଗଲା ।

ନିଜର ଛୋଟ ବଖରା ଭିତରେ ହଳିଆ ମାଆ ଶୋଇ କଡ଼ ଲେଉଟାଉଲେ । କିଛିଦିନ ହେଲା ରାତିରେ ଭଲ ନିଦ ହେଉନି । ସେଦିନଠୁଁ ବୋହୂ ମୁହଁରେ ବାଡ଼ବତା ରହୁନି । ଯେତେବେଳେ ସେତେବେଳେ ଦେଖେଇ ଶିଖେଇ ପଦେ ନ କହିଲେ ଯେମିତି ତା ଭାତ ହଜମ ହଉନି । ସେ ଅବା କଅଣ କରିବେ, କିଛି କହିଲେ କଥା ଆହୁରି ବଢ଼ିବ । ବୋହୂକୁ ସିନା ହଳିଆ ପ୍ରୋତ୍ସାହନ ଦଉନି, କିନ୍ତୁ ଏ କଳଘର କଥା ନେଇ ହଳିଆ ମନରେ କଅଣ ଅଛି? ଗତ କିଛି ଦିନ ହେଲା ବୁଲେଇ ବଙ୍କେଇ ହଳିଆ ସେଇ କଥା କହିବାକୁ ଚାହୁଁନି ତ?

କିନ୍ତୁ ଏତେ ସହଜ କି ଏମିତି ଗୋଟେ ସିଦ୍ଧାନ୍ତ ନେବା? ଚକରା ତାଙ୍କୁ ଦୋଷ ଦବନି? ତାଙ୍କ ମୁଣ୍ଡରେ ଦିଦିଟା ଝିଅ ବାହାଘର ବୋଝ । ଆଜି ଦେହ ମୁଣ୍ଡ କେତେବେଳେ କୋଉ କଥା ।

କମ୍ ଖର୍ଚ୍ଚ ଲାଗିବ ବୋଲି ହଳିଆ ବାପା ନିଜ ସ୍ତ୍ରୀ ନାଁରେ ଗଜରସ୍ତା କଡ଼ ଜମିଖଣ୍ଡକ କାଗଜପତ୍ର କରିଥିଲେ । କଲିକତାରୁ କଳ ଆଣି ପକେଇଥିଲେ । ହଳିଆ ବାପା ଗଲା ପରେ ସେ କେତେ ହୀନିମାନୀ ହେଇନାହାନ୍ତି ଛଅଟା ପିଲାଙ୍କୁ ନେଇ । ଭାଇଭଗାରି କିଏ ଠିଆ ହେଇଛି? ହଳିଆ ତ ତାଙ୍କ କଥା ଶୁଣିଲାନି, ମାଧମିକ ଦେଲାନି । ଜମିବାଡ଼ି କଥା ବୁଝିଲା । ସେ ଦଉଡ଼ା ଦଉଡ଼ି କରି ଦିଭଉଣୀଙ୍କ ବିଭାଘର ଉଠେଇଲା । ଘର ମୁରବି ବୋଲି କମ୍ ବୟସରୁ ତାର ହାବଭାବ ଉତୁରିଲା । ବିଧବା ମାଆକୁ ଦିନେ ଆଦରରେ କଥା ପଦେ କହିଛି? ଦିନେ ତା ଗୋଡ଼ ଘଷି ଦେଇଛି ନା ପଗୁରିଛି କଣ ଖାଇବାକୁ ମନ ହଉଛି । ମାଆର ମୁରବି ହେବାକୁ ଜନ୍ମ ହେଇଛି ତ!

ଚକରା ଦାୟିତ୍ୱ ସିନା ନିଏନି, କିନ୍ତୁ ଆସିଲେ ମାଆ ମାଆ ଡ଼ାକରେ କମ୍ପେଇବ । ହେଇ ନେ, ମାଆ ଖାଲେ  ଲେଡ଼ିକେନି ମୁଁ ଭୁବନେଶ୍ୱରରୁ ଆଣିଛି । ମାଆ କାନିରେ ମୁହଁ ପୋଛି କହିବ ତୁ ଗୋଟେ ଭଲ ଲୁଗା ପିନ୍ଧୁନୁ । ଗାଁ ମାଇପେ କହିବେ ଚକରା ଏବେ ବି ଛୁଆ । ହେଲେ ସିଏ ଜନମ କଲା ମାଆ । ସେ ଜାଣନ୍ତି ଏସବୁ ଲୋକଦେଖାଣିଆ ବେଶି, ଭିତରେ ଭାବ କମ୍ । ଭୁବନେଶ୍ୱର ଥରେ ନେଇଯାଇଥିଲା ତା ପୁଅ ବ୍ରତଘର ବେଳେ, ବାଧ କରି ତାକୁ ମାସେ ଅଟକେଇଲା । ହେଲେ ସେଠି ଅଲଗା ରୂପ । ଦିନେ ସ୍ନେହରେ ନାତିକୁ ମୁଢ଼ି ଦିଟା ବେଲାରୁ ଖୋଇଦେଲି ଯେ, ସାନ ବୋହୂ ଏକବାରେ ଫଁ ଫଁ; ଚକରା କହିଲା ତୋ ଖାଇବା ତୁ ଖାଇବୁ, ତାକୁ ଖୋଇବୁନି । କାହିଁ ତା ଆଈ ଯେତେବେଳେ ଏମିତି ଖୋଇଦିଏ ମୁହଁ ଖୋଲେନି ତ । ସହରୀ ଧପଧପି ଶାଶୁ, ମାଆ ମଫସଲୀ । ଚକରା ନିଜେ ଆସେ, କେତେବେଳେ ତା ପୁଅକୁ ଟିକେ ଆଣେ? ସେକଥା ଲମ୍ବେଇଲେ ଏଇକ୍ଷିଣା ସାତକାଣ୍ଡ ରାମାୟଣ ହେବ ।

ବଡ଼ ବୋହୂର ଜ୍ୱାଳା ଦିନକୁ ଦିନ ବଢୁଛି । ଆଜିକାଲି ଆଉ ଖାଇବାକୁ ବାଢ଼ି ଦେଉନି କି ତାଙ୍କ ବାସନ ଉଠଉନି । ତାର ଯାହା ମନ ତା ରାନ୍ଧୁଛି ।

ଆଗକୁ ଦିଦିଟା ଝିଅ ବିଭା ହେବେ । ତାଙ୍କ ହାତରେ କିଛ ନ ରହିଲେ କଅଣ ହେବ? କିନ୍ତୁ ବୁଢ଼ୀକାଳେ କଲେ ବଡ଼ ପୁଅବୋହୂ ସେବାଯତ୍ନ କରିବେ । ତାଙ୍କ ପୁଅଝିଅଙ୍କୁ କୋଳରେ କରିଛି । ସେଇମାନେ ଜେଜେମାଆ ଜେଜେମାଆ କହି ତାଙ୍କ ଉପରେ ଲଦିହେଉଛନ୍ତି । ସେଇମାନେ ତାଙ୍କ ବୋଲହାକ କରୁଛନ୍ତି । ଚକରା ପୁଅ ଅନ୍ତରରେ ତାଙ୍କ ପାଇଁ ଟିକେ ଶରଧା ଅଛି? କଳଘର ହଳିଆ ନାଁରେ କରିଦେଲେ କ୍ଷତି କଣ?

ନାଁ, କିଛି ଗୋଟେ ସିଦ୍ଧାନ୍ତ ନେବାକୁ ହିଁ ହେବ ।

ପଞ୍ଚୁକ ଭିତରେ ହଳିଆ ମାଆ ସୀତାଦେବୀ ଦଲିଲ ପତ୍ରରେ ହାତ ଆଙ୍ଗୁଠି ଛାପ ଦେଲେ; କଳଘର ହଳିଆର ହେଲା । କଥାଟା ଗାଁମୁଣ୍ଡ ଖଟିରେ ପଡିଲା । ନଈକୂଳରେ ମାଇପେ କୁହାକୁହି ହେଲେ । ସମସ୍ତଙ୍କ ମୁହଁରେ ସେଇ ଏକା କଥା: ହଳିଆ ମାଆ କଳଘର ହଳିଆ ନାଁରେ କଲେ । ଆଲୋ, ଚକରା ଜାଣିଛି ନା? ଚକରାକୁ ନ ଜଣେଇ?

ଚକରା ଖବର ନ ପାଇବା ଆଉ କଅଣ ଡେରି ହେଇଥାଆନ୍ତା? ଗାଁରୁ ଭୁବନେଶ୍ୱର କେତେ ଲୋକ ସବୁ ଦିନ ଯିବା ଆସିବା, ଦଶ କୋଡ଼ିଏ ଟଙ୍କା ରିକ୍ସାଭଡ଼ା ଯାଉ ପଛେ ଚକରାକୁ ଖବର ଦେଇ ନାଟ ଦେଖିବାର ଲୋଭ ସମ୍ଭାଳିବା କି ଛୋଟିଆ କଥା!

କଳଘର କାଗଜପତ୍ର ହେବାର ଛଅ ସାତ ଦିନ ଯାଇଥିବ କି ନାହିଁ ଚକରା ଅଫିସ ଛୁଟି ନେଇ ଦିନେ ହଠାତ୍ ଆସି ଖରାବେଳେ ଗାଁରେ ହାଜର । ଦାଣ୍ଡରୁ ତା ପାଟି ଶୁଭିଲା, "ମାଆ, ମାଆ!" ଘରେ ପଶୁ ପଶୁ ସେ ବିରକ୍ତ ହେଇ କହିଲା, "ମୋତେ ନ ଜଣେଇ ଏମିତି କେମିତି ତୁମେ ଦିଜଣ କଲ? ମୁଁ ଗାଁଲୋକଙ୍କଠୁଁ ଶୁଣୁଛି କଅଣ ନା ମୋ ବାପ ସମ୍ପତ୍ତିରେ ମୋର ଭାଗ ନାହିଁ?"

ଗାଧେଇ ସାରି ହଳିଆ ମାଆ କୂଅମୂଳେ ଲୁଗା ବଦଳଉଥିଲେ, ଚକରା ପାଟି ଶୁଣି ତରବରରେ ଯେନତେନ ଗୁଡ଼େଇ ହେଇ ଭିତରକୁ ଆସିଲେ ।

"କଅଣ ଦାଣ୍ଡରେ ମୋ ନିସାବ କରିବୁ," ହଳିଆ ମାଆ ଦବି ନଗଲା ଭଳି କହିଲେ ।

ବଡବୋହୂ ଭାତପେଜ ଗାଳି ଚୁଲିମୁଣ୍ଡରେ ଏପଟ ସେପଟ ହେଉଥିଲା । ହଳିଆ ନଈକୁ ଗାଧେଇ ଯାଇଥିଲା ।

ଚକରା କହିଲା, "ମୋର ନିଜର ବୋଲି କେହି ନାହାଁନ୍ତି । ନା ଭାଇ, ନା ମାଆ । ଯଦି ମୋ ନିଜ ମାଆ ଭାଇ ମିଶିକି ପଛରୁ ଛୁରି ପେଲିବେ, ମୁଁ ପରଲୋକଙ୍କୁ କଅଣ ଦୋଷ ଦେବି?"

ହଳିଆ ମାଆଙ୍କ ହୃଦୟକୁ କଥାଗୁଡ଼ା କିମିତି ବିଦାରି ପକେଇଲା । ଚଉଁରାରେ ତୁଳସୀକୁ ପାଣି ଟେକି ଖାଇ ବସିବେ କଅଣ, ସେ ସେଇଠି ନିଶ୍ଚଳ ହେଇ ବସି ପଡ଼ିଲେ ।

ବଡ଼ ବୋହୂ ଗିଲାସେ ଲେମ୍ବୁ ସରବତ ଦିଅରକୁ ବଢ଼େଇ ଗଳା ନରମେଇ କହିଲା — "ତୁମର ତ ଦିଜଣଙ୍କର ଚାକିରି, ତୁମର କଅଣ ଅଭାବ? କଳଘରଟା ମାଆ ଭାଇଙ୍କୁ ଦେଲେ। ଏଠି ଆଠପ୍ରାଣୀ କେମିତି ଚଳିବେ? ବିବାହବ୍ରତ, ଯାନିଯାତ୍ରା, ହାନିଲାଭ ସବୁ ଅଛି ନା ପୁଣି?"

"କାହିଁକି, ମୋତେ ଟିକେ ପଚାରିଥିଲେ କଅଣ ହେଇନଥାନ୍ତା?" ଚକରା ପାଲଟା ପ୍ରଶ୍ନ କଲା, "ମୋର ଏଥିରେ ମତ ଅଛି କି ନାହିଁ ପଚାରିବନି ଟିକେ? ଅଭାବ ଥିଲେ ମୋତେ କହିଥାନ୍ତ, ମୁଁ ଟଙ୍କା ଦେଇଥାନ୍ତି। ସେଇ ରାସ୍ତାକଡ଼ ଜାଗାରେ କେତେ କଅଣ ମୁଁ କରିପାରିଥାନ୍ତି। ମାଆ ହେଇକି ତୁ ମୋ ସହ ଏମିତି ଅନ୍ୟାୟ କଲୁ? ତୁ ମୋତେ ଥରେ ପଚାରିଲୁନି?"

"ହଁ ରେ ପୁଅ, ତୋତେ ପଚାରିକି ମୁଁ ଚଳିବିନି ଆଉ କଅଣ?" ହଳିଆ ମାଆ ତାଚ୍ଛଲ୍ୟଭରା ସ୍ୱରରେ ଉତ୍ତର ଦେଲେ।

"ତୋ ନାଁରେ ଥିଲା ବୋଲି କଅଣ ତୁ ଯା ଇଚ୍ଛା ତା କରିବୁ? ହେଲା, ସେଟା ନନା ତୋ ନାଁରେ କରି ଯାଇଥିଲେ। ତା ବୋଲି ସେଥିରେ ମୋର ଭାଗ ନାହିଁ?" ଚକରା ସ୍ୱର ଏଥର ଧାରୁଆ। ଚକରା ଯେତେବେଳେ କୋଉ କଥା ନେଇ ଟିକେ ଉତ୍ତେଜିତ ହେଇପଡ଼େ, ତା ଭୂଲତା କପାଳକୁ ଉଠିଯାଏ, ସେ ଗୋଟେ ଜାଗାରେ ସ୍ଥିର ନ ବସି ହାତ ଦିଟାକୁ ପିଠିପଟକୁ ଗେଞ୍ଜି ଏପଟ ସେପଟ ହୁଏ। ତା ଗୋଡ଼ରୁ ମୁଣ୍ଡ ଯାଏ ହଲିଲା ପରି ମନେ ହୁଏ।

ଏତିକି ବେଳେ ହଳିଆ ଓଦା ନାଲି ଗାମୁଛା ପିନ୍ଧି ଘର ଭିତରକୁ ପଶିଲା। ତା ଉପରେ ଆଖି ପଡ଼ିଲା ମାତ୍ରେ ଚକରା ହୁମୁହୁମୁ ହେଇ ପଚାରିଲା, "ଭାଇ, ତୁ କଅଣ ଏଟା ଠିକ୍ କଲୁ?"

"ମୁଁ କଅଣ କଲି? ମାଆର ଯାହାକୁ ଇଚ୍ଛାହେଲା ସେ ତାକୁ ଦେଲା। ତୋର ଏଥିରେ ଆପତ୍ତି କରିବାରେ କଅଣ ଅଛି?"

"ଆପତ୍ତି ଅଛି। ଘୋର ଆପତ୍ତି ଅଛି।" ଚକରା କଡ଼ା ଜବାବ ଦେଲା, "ପ୍ରଥମେ ତ ମୋତେ ନ ପଚାରି ଏମିତି କରିବାଟା ଘୋର ଅନ୍ୟାୟ। ମୋ ବାପାଙ୍କ ସମ୍ପତ୍ତିରେ ମୁଁ ଭାଗ ପାଇବିନି? ମୁଁ କଅଣ କେବେ ମାଗିଛି ଲାଭ କ୍ଷତି ହିସାବ? ଯାହା ତ ହଉଛି ଜମି ବାଡ଼ି ସବୁ ତୁମେ ଖାଉଛ? ମୋତେ ଦିନେ ଗଣ୍ଡେ ନେଇକି ଦେଇଛ ନା କରିଛ?"

"ତୁ ନଉନୁ କଅଣ ନବୁ। ମୁଁ ଦିନରାତି ବିଲରେ ଖଟିବି, ପୁଣି ବାନ୍ଧିବୁନ୍ଧି ନେଇ ଦେଇ ଆସିବି ସାଆନ୍ତକୁ। ଆହାଃ!" ହଳିଆ ବକ୍ରୋକ୍ତି କରି ହସିଲା।

ଚକରା ଦେହରେ ନିଆଁ ଲାଗିଗଲା କି କଅଣ!

"ଭାଇ ?" ଚକରା ଗୋଟେ ବିକଟାଳ ଚିତ୍କାର କଲା ।

ଚକରା ଚିତ୍କାରରେ ହଳିଆ ଚମକି ପଡ଼ିଲା ।

"ମାଆକୁ ଫୁସୁଲେଇ ଶିଖେଇ ସମ୍ପତ୍ତି ନିଜ ନାଁରେ କଲୁ । ସରିତା ଠିକ୍ କୁହେ – ତୁମ ଘରଲୋକ କେହି ତୁମକୁ ବାସିବାଳରେ ପଗ୍ଣରନ୍ତିନି, ତୁମେ ହିଁ ଖାଲି ମୋ ମାଆ ମୋ ଭାଇ ହୁଅ ।"

ହଳିଆ ମାଆ ଆଉ ଚୁପ୍ ରହିପାରିଲେନି । "ମାଇପ ଶିଖେଇକି ପଠେଇଛି, ଆସିଛୁ ମାଆ ଭାଇ ସାଙ୍ଗେ ମୁହଁ ପକେଇବାକୁ? ତୋ ମୁହଁକୁ ଲାଜ ଟିକେ ନାହିଁ ରେ ।"

ବଡ଼ବୋହୂ ମୁହଁ ମୋଡ଼ିଲା ।

"ମାଆ!" ଚକରା ଭୁରୁଡ଼ିଟେ ପକେଇଲା । ଦାଣ୍ଡରେ ଦାଶ ବୁଢ଼ା ଗୋସେଇଁ ଯାଉଥିଲେ, ବାହାରୁ କହିଲେ, "କାହା ପାଟି ଶୁଭୁଛି, ଯେ଼ ଆମ ଚକରା ଆସିଛି କି?" ସେ ବାରଣ୍ଡା ପାହାଚ ଉପରକୁ ଉଠି କହିଲେ, "ତୁ କଅଣ ଏମିତି ଅଗ୍ଣନକ ହାଜର, ରହିବୁ ନା ପଳେଇବୁ?"

"ନାଁ, ଗୋସେଇଁ, ମୁଁ ଆଜି ପଳେଇବି ।"

"ସମୟ କାଢ଼ି ଆସୁନୁ ଆମ ଆଡ଼େ । କେତେଟା କଥା ଥିଲା ତୋ ସାଙ୍ଗରେ ।" ହେ ହେ ହେ ଗଳା ଝାଡ଼ି ହସି ହସି କି ସେ ଗ୍ଣଲିଗଲେ ।

ଯେ଼ ଗୋସେଇଁଙ୍କ ସାଙ୍ଗରେ ଚକରାର ଭାରି ଘଣି । କମ୍ ଲୋକ ନୁହେଁ ସେ । କଥା କହିବେ ଯେମିତି ଗୋଟା ପଣେ ନିଜର । କାହା ଘରେ ଜୀରା ଫୁଟଣ ଫୁଟିଲେ ବି ଯ଼ାଙ୍କ ପାଖରେ ଖବର ଥାଏ । ଆଗେ ଗାଁ ମନ୍ଦିରରେ ପୂଜା କରୁଥିଲେ । ଏବେ ସେ କାମ ତାଙ୍କ ପୁଅ କରୁଛି । ତାଙ୍କୁ ତେଣୁ ସକାଳେ ସଞ୍ଜରେ ସାହୁ ଦୋକାନ ଖଟିଆରେ ଗୋଡ଼ ଉପରେ ଗୋଡ଼ ପକେଇ ବସିଥିବାର ଦେଖାଯାଏ ।

ବଡ଼ବୋହୂ ନିଜ ଶାଶୁ, ସ୍ୱାମୀ ଆଉ ଦିଅରଙ୍କ ପାଇଁ ଭାତ ବାଢ଼ି ଥୋଇଲା ।

"ମୋର ଏ ଘରେ ଖାଇବା ଦରକାର ନାହିଁ" କହି ଚକରା ହୁମୁହୁମୁ ହୋଇ ବାହାରିଗଲା ।

"ଶୁଣ୍, ଶୁଣ୍, ଟିକେ ରହ ।" ହଳିଆ ମାଆ ବସିବା ଛାଡ଼ି ଚକରା ପଛରେ ଆସିଲେ, କିନ୍ତୁ ଚକରା ମୋଡ଼ାଣିରୁ ଅଦୃଶ୍ୟ ହୋଇଯାଇଥିଲା ।

ସେଦିନ ସନ୍ଧ୍ୟା ପରେ ଚକରା ଘର ଭିତରକୁ ଝଡ଼ ଭଳି ପଶି ଆସି ସିଧା ଛାତ ଉପରକୁ ଗଲା । ସିଡ଼ି ଘର କବାଟରେ ତାଲା ପକେଇ ଚାବିକାଠି ପକେଟରେ ରଖିଲା । ସେ ଆଗରୁ ବହୁତ ଥର କହିଛି — "ମୁଁ ପୁଅ ବାହାଘର କରି ଆସି ଗାଁରେ ଉପରେ ଘର କରି ରହିବି ।" କିଏ କହିପାରିବ ତା ମୁଣ୍ଡରେ ଏବେ କି ବୁଦ୍ଧି ଖେଳୁଛି ।

ହଳିଆ ସ୍ତ୍ରୀ ଶାଶୁ ଶୁଣିପାରିଲା ଭଳି ଗାରୁଗାରୁ ହେଲା — "ଶୀତରେ ଉପରେ କିଏ ଟିକେ ଖରା ପୁଆଁଉ ଥିଲା । କଖାରୁବଡ଼ି ଟିକେ ଶୁଖେଇବ କୋଉଠି ଶୁଖା ଏବେ ? ଏତେ କୁତୁରୁପିଆ । ଛିଃ!"

ପର ସପ୍ତାହ ଶନିବାର ସନ୍ଧ୍ୟା ସନ୍ଧ୍ୟା ହେବ ଚକରା ଆସି ଘରେ ପହଞ୍ଚିଲା । ସେତେବେଳେ ହଳିଆ ମାଆ ବୈଠକ ଘର ଖଟରେ ଗଡ଼ୁଥିଲେ ।

ଚକରା ଗୋଡ଼ ହାତମୁହଁ ଧୋଇ ଆସି ତାଙ୍କ ପାଖରେ ବସିଲା ।

"ମାଆ ଆଉ ଭବିଷ୍ୟତରେ ଯେମିତି ଗଣ୍ଡଗୋଳ ହବନି ଜମି ଭାଗ ବଣ୍ଟା ହେଇଗଲେ ଭଲ । ନା ତୁ କଅଣ କହୁଛୁ ?"

ବଡ଼ ବୋହୂ ରୋଷେଇ ଘର କବାଟ ପାଖରୁ କାନେଇଲା ।

ହଳିଆ ମାଆ ଯେ ଏମିତି ଗୋଟେ ଆଶଙ୍କା କରି ନ ଥିଲେ ତା ନୁହେଁ । ତାଙ୍କର କଅଣ ଏଥିରେ କହିବାରେ ଅଛି ? ଏ ଦିଟାଙ୍କ କଳି ଝଗଡ଼ାରେ କଲବଲ ହଉଛନ୍ତି ସେ ।

"ହଉ । ହଳିଆ ଆସୁ ।"

ସେଦିନ ଚକରା ଆଉ ପାଟିମୁଣ୍ଡ କଲାନି । ହଳିଆ କଳଘର କାମ ସାରି ଫେରିଲା ବେଳକୁ ସିଏ ଖାଇବସିଥିଲା । ତାକୁ କିଛି କହିଲାନି ।

ରାତିରେ ଶୋଇବା ବେଳେ ହଳିଆ କାନରେ ତା ସ୍ତ୍ରୀ କହିଲା — "ଚକରା ତାଙ୍କ ଭାଗ ନେବେ କହୁଛନ୍ତି । କାଗଜପତ୍ର କରିବା କଥା କହୁଥିଲେ ।"

ସ୍ତ୍ରୀ କଥାରେ ହଳିଆ କେବଳ "ହୁଁ" ଟିଏ କଲା ।

ଭୋରୁ ଗାଈ ହମ୍ବା ରଡ଼ିରେ ଆଗେ ହଳିଆ ମାଆ ଉଠି ସବୁଦିନ ଭଳି ଦାଣ୍ଡ କବାଟ ଖୋଲିଲେ । ଦାଣ୍ଡ ପହଁରା ସାରି ଗାଈ ବାଛୁରି ଦିଟାକୁ କୁଣ୍ଡାପାଣି ଦେଇ ବସିଛନ୍ତି, ଚକରା ଆସି ତାଙ୍କ ପାଖରେ ବସିଲା ।

ବଡ଼ ବୋହୂ ଗାଧେଇ ଆସି ଗୁହା ବସେଇଥିଲା । ହଳିଆ ବି ଉଠି ଏପଟ ସେପଟ ହଉଥିଲା ।

"ତୁ ସିନା କହୁଛୁ । କେତେ ଟଙ୍କା ଏବେ ଲାଗିବ ଜମିବାଡ଼ି କାଗଜପତ୍ର କରିବାକୁ କହିଲୁ ?" ହଳିଆ ମାଆ ଗୁହା ଢ଼ୋକେ ପିଇ କହିଲେ ।

ଚକରା ପାଖରେ ଏସବୁର ଉତ୍ତର ଥିଲା; ପ୍ରକୃତରେ ସେ ସବୁ କଥା ଭାବିଚିନ୍ତି ଯୋଜନା କରି ଆସିଥିଲା । ତା କଥା ଅନୁସାରେ କାଗଜପତ୍ର ଓକିଲ ଯାହା ଖର୍ଚ୍ଚ ହେବ ସେ କରିବ, ବଦଳରେ ଛୋଟ ଖଣ୍ଡେ ଜମି ନେବ । ହଁ, କଳଘର ବାବଦକୁ ବି ମାଣେ ଚକବନ୍ଦୀ ଜମି ନବ । କଥା ଆଳରେ ତାର କୋଉ ସାଙ୍ଗର ଭାଇ କେମିତି ମକଦ୍ଦମା କରି ତା ଭାଗ ନେଲା, ଭାଇକୁ ପୁଲିସ ଆଣି ବନ୍ଧେଇଲା ଏମିତି କେତେ କଥା କହିଲା । ସେ କିନ୍ତୁ ସେମିତି କରିବନି । ତା ମନ ଛୋଟ ନୁହେଁ । ସିଏ କେବେ ହିସାବ ନିକାସ କରିନି । ସେ କେତେ କଥା ଭାବିଛି । ତା ପୁତୁରା ଦିଜଣଙ୍କର ପଢ଼ା ସରିଲେ ତାଙ୍କୁ ଗୁକିରିରେ ରଖେଇ ଦେବ । କିନ୍ତୁ ତା ଆଗରୁ ତାକୁ ନିଜ ସ୍ଥିତି ମଜଭୁତ କରିବାକୁ ପଡ଼ିବ । ସହରରେ ଟଙ୍କା ବାପାମାଆ । ପାଖରେ ଟଙ୍କା ନ ଥିଲେ କିଛି ନାହିଁ ।

ଏମିତି କଥା ସବୁରେ ରବିବାର ଦିନଟା କଟିଗଲା । ସବୁ ଫଇସଲା କରି ସେ ଫେରିଗଲା ।

ସେ ବର୍ଷ ମାଘରେ ହଳିଆ ଓ ଚକରା ସମ୍ପତ୍ତି ଭାଇଭାଗ ହେଇଗଲା । ସେଦିନ ଗାଁ ଲୋକ ଦେଖିଲେ ଚକରା ପ୍ରଥମ କରି ତା ମାଆ ଆଉ ଭାଇ ହଳିଆକୁ ତା ଗୁରିଚକିଆରେ ବସେଇ କଟେରିକୁ ଗଲା ଓ କେଇ ଘଣ୍ଟା ପରେ ଫେରିଲା । କଚେରିରୁ ଫେରି ମୂଲିଆ ଡ଼କେଇ ଯୋଉ ଫସଲ ତା ଭାଗ ଜମିରେ ହେଇଥିଲା କାଟି ବେପାରି ଡ଼ାକି ବିକ୍ରି କଲା । ଯିବା ଆଗରୁ ମଧୁଆକୁ କହି ତା ଗାଡ଼ିରେ ଦି ବସ୍ତା ଚିନାବାଦାମ, ଅରୁଆ ଗୁଉଳ ବସ୍ତେ ଟେକି ରଖିଲା । ଚକରା ଆସିଲେ ମଧୁଆ ତା ପାଖରେ ଚକ୍କର କାଟେ, ତା ମୁଣ୍ଡ ଚିପିଦିଏ, ଗୋଡ଼ ଘଷିଦିଏ, ବୋଲହାକ କରେ; ତାଠୁଁ ଟଙ୍କା ପଗୁଶ ହାତଖର୍ଚ୍ଚ ପାଏ ।

ସାଇ ପଡ଼ିଶା ଶୁଣିଲେ ହଳିଆ ରାଗ ଗରଗର ହେଇ କହୁ ଥାଏ, "ଏ ନିଉଛଣାଟାକୁ ଦଇବ ଦଣ୍ଡିବ । ତାକୁ ଦଇବ ଯଦି ନ ଦଣ୍ଡିବ, ଦଇବ ନାହିଁ । ଦେଖିବ, ତାକୁ କେମିତି ଦଇବ ଦଣ୍ଡିବ । ହଁ, ହଁ ଦଇବ ଦଣ୍ଡିବ ।" ହଳିଆ ଯ୍ରା କହୁ କହୁ ନିଜ ହାତରେ ଜକେଇ ଆସିଥିବା ଆଖିଯୋଡ଼ାକୁ ପୋଛିଲା ।

ସେଦିନ ସନ୍ଧ୍ୟା । ଗାଁମୁଣ୍ଡ ସାହୁ ଦୋକାନରେ ଖଟିଆରେ ଦାଶ ଗୋସେଇଁ, ଗାଁ ଟାଉଟର ରବି ପଣ୍ଡା । ହାତେ ଖଣ୍ଡେ ଛାଡ଼ି ମଧୁଆ ଟୋକା ବି ତା ସାଇକେଲରେ ଭରାଦେଇ ଠିଆ ହେଇଥିଲା ।

"ଚକରା କିରେ? ଆସେ ଆସେ ।" ଦାଶ ଗୋସେଇଁ ଆଗ୍ରହରେ ଡ଼ାକିଲେ । "ଆରେ, ଗୁହା ଆଣେ, ଦେ ଏଠି ଆମ ଚକରାକୁ ।"

ଚକରା ଖଟିଆରେ ଗୋଡ଼ ଟେକି ଆରାମ କରି ବସିଲା ।

"ଆଉ କଅଣ ସବୁ ଖବର?" ଦାଶେ ପଗ୍ଚରିଲେ । ଉତ୍ତରରେ ଚକରା ନୀରବ ରହିବା ଦେଖିଲେ, କିନ୍ତୁ ଏତେ ସହଜରେ କି ସମ୍ଭଳାଯାଏ? ସେ ଟିକେ ଫୁସୁଲେଇ କହିଲେ, "ଶୁଣିଲି, ଆଜି କଚେରି ଯାଇଥିଲୁ?"

"ହଁ ।"

"ଆଉ ସବୁ ଭଲରେ ଭଲରେ ହେଇଗଲା ନା?" ନିହାତି ଆପଣାର ଲୋକ ଭଳି ଖିଅ ଯୋଡ଼ିଲେ ଗୋସେଇଁ ।

"ହଁ, ଏଥର ତାର ମୋର ଅଲଗା । ସିଏ ତା ଭାଗରେ ଚାଷ କରୁ । ମୋ ଜମି ପଡ଼ିଆ ପଡୁ, କିନ୍ତୁ ଯୋଉ ଭାଇ ମୋ ବିଶ୍ୱାସରେ ବିଷ ଦେଲା, ତା ଅମାର କାହିଁକି ଭରିବି?"

"ସତରେ ତାର ଏମିତି କରିବା ଉଚିତ୍ ନଥିଲା । ଦେଖ, କେମିତି କଳଘରଟା ନିଜ ନାଁରେ କରେଇ ନେଲା?" ଗୋସେଇଁ ଭାଇଭାଇ ଝଗଡ଼ା ନିଜେ ଉପଭୋଗ କରୁଥିଲେ ବି କୃତ୍ରିମ ସମବେଦନା ଦେଖେଇ କହିଲେ ।

"ତୁମେ ଆଉ ମୋ କଟା ଘାଆରେ ଚୂନ ମାରନା, ଗୋସେଇଁ ।" ଚକରା ଗମ୍ଭୀର ଜଣାପଡ଼ିଲା ।

"ହେଇ ଦେଖ ଯାକୁ? ଆଜିକାଲି ଭଲ କହିଲେ ଭାଲ ବୁଝିବେ ଲୋକ!"

"ତୁମେ କୁହ, ମାଆ ଆଉ ଭାଇ କଅଣ ଠିକ୍ କଲେ?" ଚକରା ପଗ୍ଚରିଲା ।

"ତୁମ ଘର କଥା । ଆମେ ବାହାର ଲୋକ କଅଣ କହିବୁ ରେ?" ଟିକେ ଚୁପ୍ ରହି ସେ ପୁଣି କହିଲେ, "ବାପ ସମ୍ପତ୍ତି, ତୋ ହକ୍ ତୁ ଛାଡ଼ିବୁ କାହିଁକି? ମୋତେ ହେଲେ କହିଥାଆନ୍ତା? ମୁଁ ତାକୁ ବୁଝେଇଥାନ୍ତି, ଦେଖେ ବାବୁ ଚକରାକୁ ଟିକେ ପଗ୍ଚରେ । ସବୁଦିନ ଏଠି ବସେ । ସୋର୍ ଶବଦ ନାହିଁ, ମୁଁ ହଳିଆକୁ ହୁଣ୍ଡା ଭାବିଥିଲି ମ?"

"ହୁଣ୍ଡା ?" ମକର ଘୃଣାରେ ମୁହଁ ବିକୃତି କଲା ।

"ଛାଡ଼ ସେକଥା । ଯାହା ହେବାର ଥିଲା ହେଲା । ତୋରି ଭାଇ ପୁତୁରା ଝିଆରି ଖାଇବେ ନା ଆଉ କିଏ ?" ଦିପକ୍ଷକୁ ସୁହେଇଲା ଭଳି କଥା କହିବାରେ ଗୋସେଇଁଙ୍କୁ କିଏ ପାରିବ ?

"କାହିଁକି ସେମାନେ ଖାଉ ନଥିଲେ କି ଆଜି ଯାଏଁ? ମୁଁ ଦିନେ ଗୃଉଳ ଗଣ୍ଡେ ନେଇଛି ?"

"ହଁ ରେ ବାପା । ସତରେ ତୁ କେତେ କଷ୍ଟରେ ସହରରେ ଚଳୁଛୁ । ଦିନରାତି ଏକା କରି ଧାଇଁଛୁ । ମୋତେ କଣ ଅଛପା ଅଛି ?" ପେଟରେ ହାତ ବୁଲେଇ ନିଜ ଉଷୁମ ଗୃଦରକୁ ଦେହରେ ସଜାଡ଼ି ଗୋସେଇଁ କହିଲେ, "ଗାଁ କଥା ଅଲଗା । ବସି ଶୋଇ ହେଲେ ହେଲା ନ ହେଲେ ନାହିଁ ।"

ରବି ପଣ୍ଡା ଭାବିଲା – ଏ ଗୋସେଇଁ ଖାଲି ଏମିତି କଥା ବୁଲଉଥିବେ, ମଞ୍ଜି କଥା କହିବେନି । "ଏବେ ତ ତୁମେ ଭାଗନେଲ । କଥା ଛିଣ୍ଡିଲା । ଗୋଟେ ଭୋଜି ଭାତ ଦିଅ ଗରିବଙ୍କୁ ।" ସେ ଚକରାକୁ କହିଲା ।

"କଥା କଅଣ ଛିଣ୍ଡିଲା? ସବୁ ଛିଣ୍ଡିଲା । ମୁଁ ମୋ ବାଟରେ, ସେ ତା ବାଟରେ ।" ଚକରାର କଥା ଶୁଣି ରବି ଓ ଗୋସେଇଁ ପରସ୍ପରକୁ ଚହାଁଚହିଁ ହେଇ ମୁହଁଭାବକୁ ଯଥା ସମ୍ଭବ ସ୍ୱାଭାବିକ ରଖିବାକୁ ଚେଷ୍ଟା କଲେ ।

"ନୁହେଁ ତ ଆଉ କଅଣ ? ଯାହାହେଲେ ବାପ ସଂପତ୍ତି ନା । ତୁ କାହିଁକି ଛାଡ଼ିବୁ ନା ?" ହେ ହେ ହେ ହେଇ ଗୋସେଇଁ ହସିଲେ ।

ରବି ପଣ୍ଡା ପାଳି ଧରିଲା — "ନୁହେଁ ଆଉ କଅଣ ? ଯାହା ହକ୍ ଯାହାର ।" ଏମିତି ମୌକାରେ ତେଲ ମାରିଥିଲେ ଦୋଳ ମେଳଣ ବେଳକୁ ମୋଟା ଗୃନ୍ଦାଟେ ଆଦାୟ କରିବା ସୁବିଧା ହେବ ।

ଚକରା ଉଠିଲା । "ଯାଏ ଏବେ ଦଦେଇ । ମୁଁ ଆର ଥରକୁ ଆସେ ଗୋଟେ ଖାସୀ ମାଂସ ଭୋଜି କରିବା, ନାଁ କଅଣ ରବି ?"

"ହଁ, ହଁ, ତା ହଉ ତା ହଉ, ଦାତାଙ୍କର ଜୟ ହେଉ ।" ଏଥର ଗୋସେଇଁ, ରବି ପଣ୍ଡା ଏକସ୍ୱରରେ ଆନନ୍ଦରେ କହିଉଠିଲେ ।

ନାଲି ଧୂଳି ଧୂଆଁ ଉଡ଼େଇ ଚକରା ଗାଡ଼ି ଆଗକୁ ମାଡ଼ିଲା ।

ରବି ପଣ୍ଡା ମଧୁଆ ଆଡ଼େ ଅନେଇ ପଗୃରିଲା, "କଅଣ କିରେ, ହଳିଆ ଖବର କଅଣ ?"

"କଅଣ ଆଉ ? ଏ ବର୍ଷକୁ ବଡ଼ ଆଶା କରିଥିଲା । ଝିଅକୁ ଭୁବନେଶ୍ୱରରେ ପଢ଼େଇ ଥାଆନ୍ତା । ଭାବୁଥିଲା ପାଣିଉଠା ମଟର କିଣିଥାନ୍ତା । ଏମିତି ସବୁ କହୁଥିଲା ।"

"ହଁଅଅ ? ଆଉ ଚକରା କଥା କହୁ ନଥିଲା ?"

"ହଁ, କହୁଥିଲା..." ମଧୁଆ କଅଣ କହିବ ନ କହିବ ଠିକ୍ ନ କରିପାରି ଚୁପ୍ ରହିଲା ।

ରବି ତାକୁ ଧମକେଇଲା ଭଳି କହିଲା, "କଅଣ କହୁଥିଲା କହୁନୁ ବା ଏମିତି ନିଲଠା ଭଳିଆ କାହିଁକି ହୋଉଛୁ ?"

"ହଳିଆନା କହିଲା... ହଳିଆନା କହିଲା... ଚକରାକୁ ଦଇବ ଦଣ୍ଡିବ । ତାକୁ ଯଦି ଦଇବ ନ ଦଣ୍ଡିବ ଦଇବ ନାହିଁ ।"

"ହଁଅଅଅ, ଏମିତି କହିଲା ?" ଆଖି ତାଲୁକୁ ଉଠେଇ ରବି ପଣ୍ଡା ମୁଚୁକି ହସିଲା ପରି ମନେହେଲା ।

"ହଁ, ଗାଗିକି କହୁ କହୁ ପୂରା କାନ୍ଦ କାନ୍ଦ ହେଇଗଲେ ପା ।" ମନେ ପକେଇ ମଧୁଆ ବି ଟିକେ ଭାବପ୍ରବଣ ହେଇଗଲା ।

ସାହୁ ଚପ୍ ଛାଣୁଛାଣୁ ପାନଛେପ ଢ଼ୋକି ପଗୃରିଲା, "ନାଁ, ଏଇଟା କଅଣ ଠିକ୍ ହେଲା, ଗୋସେଇଁ ? ଚକରାର କି ଅଭାବ ? ଗରିବ ମୁରୁଖ ଭାଇଠୁଁ ଭାଗ ନେଇ କି ବଡ଼ଲୋକ ହବ ଆଉ ?"

"ଆରେ ବାବୁ, ଆମେ କଅଣ କହିବା ଠିକ୍ କି ଭୁଲ୍ ? ତାଙ୍କ ଘର ଭାଇଭାଇ କଥା । ଛାଡ଼ ହୋ ।" ହେ ହେ ହେ ହସି ଗୋସେଇଁ ନିଜର ମତ ଦେଲେ, "ମାଘ ସରିବ, ଏ ବର୍ଷ ଶୀତ କମୁନି ।"

ତାଙ୍କ କଥାକୁ ସମର୍ଥନ କଲା ଭଳି ଦଲକାଏ ଥଣ୍ଡା ପବନ ହଠାତ୍ ପୋଲ ଆଡୁ ବହି ଆସିଲା ।

(ଶୈଳଜା, ୨୦୧୬)



# ଦିନଲିପି

ମୁହଁରେ ଖୋର୍ଦ୍ଧା ଗାମୁଛା ବାନ୍ଧି ଅତି ସନ୍ତର୍ପରେ ଯା ଆସ କରେ ସକାଳ । ଦୂରଦର୍ଶନ ହେଉ ଅବା ଭ୍ରାମ୍ୟଭାଷର ପରଦା, ଝଲସୁ ଥାଏ ଖବର—ଭଦ୍ରବ ଆକାଶରେ ମେଘ ନାହିଁ, ଢାଙ୍କିଛି କଳାହାଣ୍ଡିଆ ମହାମାରୀ ।

ହଁ, କେତେ କଥା ଯାହା ଖବରରେ ଆସେନି, ଯଦିଓ ସେସବୁ କିଛି କମ୍ ବିସ୍ମୟକର ନୁହେଁ । ଯେମିତି ମୋର ଜଣେ ପରିଚିତ ଲୋକ, ବୟସ ଷାଠିଏ ଉପରେ । ଭଦ୍ରବ୍ୟକ୍ତି ଭୟାଳୁ ସ୍ୱଭାବର, ଜୀବନଟା ଯେମିତି ସାରୁପତ୍ରରେ ବନ୍ଧା, ସେମିତି ଜଗିରଖି ଚଳନ୍ତି । ଏକୋଇଶ ଦିନ, ପୁଣି ଏକୋଇଶ ଦିନ ଘରେ ଆବଦ୍ଧ ରହିବା ପରେ ସେ ହଠାତ୍ ସବୁ ସତର୍କତାକୁ ପବନରେ ଉଡ଼େଇ ଏବେ ବିନା କାମରେ ଗୁରିଆଡ଼େ ବୁଲୁଛନ୍ତି ଓ କହୁଛନ୍ତି, "ଯାହା ହବ ହବ, ମଲେ ମରିବି, କଅଣ ହେଇଯିବ ?"

ଆଉ ମୋ ପଡ଼ୋଶୀ ଘର ମାଉସୀ । ତାଙ୍କୁ ବର୍ଷକ ବାରମାସ ଥଣ୍ଡା, ପାଣିହାତ ହେବାକୁ ବାଘ ଭଳି ଡ଼ରନ୍ତି । ଆଙ୍ଗୁଳି ଫୁଲିଯାଏ ବୋଲି ପଖାଳ ବି ଗ୍ଚମଚ ସାହାଯ୍ୟରେ ଖାଆନ୍ତି । ଏବେ କିନ୍ତୁ ଯାଉଣୁ ଆସୁଣୁ ହାତ ଧୋଉଛନ୍ତି । ଅନ୍ତଡ଼ିଶାଳରୁ ଯୋଉ ଥଣ୍ଡାରୋଗ ତାଙ୍କୁ ଧରିଥିଲା ବୋଲି ସେ ସବୁବେଳେ କୁହନ୍ତି (ଯେମିତି ତାହା ତାଙ୍କର ଗୋଟେ ବିଶାଳ କୃତିତ୍ୱ), ଏବେ ଆଶ୍ଚର୍ଯ୍ୟଜନକ ଭାବେ ତାହା ତାଙ୍କୁ ଛାଡ଼ିଯାଇଛି ।

ଏସବୁ ଭିତରେ ମୁଁ ଆଜି ସକାଳେ ଦୋକାନକୁ ଯାଇ କାଗଜ, ଅଠା, ରଙ୍ଗ ଆଦି କିଣିକି ଆଣିଛି । ପ୍ରତିବର୍ଷ ଦିନଲିପି ତିଆରି କାମ ମୁଁ ଦୀପାବଳି ପରେ ଆରମ୍ଭ କରିଥାଏ । ଏ ବର୍ଷ ଗଣେଶ ପୂଜା ଯାଇନି, ଦୀପାବଳି ଯାଇ କାହିଁ, ଆଉ ଆସନ୍ତା ବର୍ଷ...!

ମୁଁ ନୂଆ ଦିନଲିପିରେ ଦିନ ସବୁକୁ କେମିତି କଳ୍ପନାର ରଙ୍ଗରେ ଭରିଦେବି ଭାବି ଭାବି କାଗଜ କାଟିବାରେ ଲାଗିପାଇଛି ।

(ପ୍ରମେୟ, ୨୦୨୦)



# ଚୁଗୁଲିବାଦୀ ମେନିଫେଷ୍ଟୋ

ସାମ୍ୟବାଦ, ସମାଜବାଦ, ଉଦାରବାଦ, ନାରୀବାଦ, ମାନବବାଦ — ସବୁରି ଉପରେ ଆଜ୍ଞା ଚୁଗୁଲିବାଦ । ଆମର ଏଠି ଯେତେ ବାଦ ପ୍ରତିବାଦ ଅଛି, ସମାଜର ଘାସମୂଳରେ ପରିବର୍ତ୍ତନ ପାଇଁ ଚୁଗୁଲିବାଦର ଆବଶ୍ୟକତା ଯେ ସବୁଠାରୁ ଅଧିକ, ଏକଥା ଦିନକୁ ଦିନ ସ୍ପଷ୍ଟରୁ ସ୍ପଷ୍ଟତର ହେଇଯାଉଛି । ନିତିଦିନିଆ ଜୀବନର କଷ୍ଟଲାଘବ କରି ହାସ୍ୟରସ ଭରୁଥିବା ଚୁଗୁଲି ସମସ୍ତଙ୍କର ପ୍ରିୟ — ଆଠରୁ ଅଶୀ ବୟସ୍କ ସମସ୍ତେ ଏହାକୁ ଉପଭୋଗ କରନ୍ତି । ଚୁଗୁଲିବାଦ ବିଶ୍ୱର ସର୍ବାଧିକ ଜନପ୍ରିୟ ବାଦ ଏଥିରେ କାହାର ସନ୍ଦେହ ନାହିଁ । ଯଦିଓ ଏମିତି ମଧ ହୁଏ — ଚୁଗୁଲି ଚୁଗୁଲିରୁ ମହାଭାରତ, ଚୁଗୁଲିବାଦୀଙ୍କ ମଧରେ ଗୋଷ୍ଠୀ କନ୍ଦଳ ଇତ୍ୟାଦି । ଏସବୁକୁ ଦୃଷ୍ଟିରେ ରଖି ଆମ ରାଜ୍ୟର ଅନେକ ଗୁଡିଏ ଅଣଆନୁଷ୍ଠାନିକ ଚୁଗୁଲି ପେଣ୍ଠକୁ ଯାଇ ସୂଚନା ସଂଗ୍ରହ କରାଯାଇ, ପରିସଂଖ୍ୟାନ କରି ଚୁଗୁଲିକୁ ବିଧିବଦ୍ଧ ଭାବେ ଆନୁଷ୍ଠାନିକ ମର୍ଯ୍ୟାଦା ଦେବାର ଦାବି ଅନେକ ଦିନ ଧରି ହେଉଥିଲା । ଖୁସିର କଥା କିଛି ଉତ୍ସାହୀ ଚୁଗୁଲିଆଙ୍କ ଦ୍ୱାରା ଇଏ ଶ୍ରାବଣର ଶେଷ ରବିବାର ଦିନ ଚୁଗୁଲିବାଦୀ ସଂଘ ରାଜଧାନୀରେ ସ୍ଥାପିତ ହେଇଛି । ଏହାର ପ୍ରଥମ ବନ୍ଧୁମିଳନ ସଭାରେ ଚୁଗୁଲିବାଦୀ ମେନିଫେଷ୍ଟୋର ଆବଶ୍ୟକତା ଓ ତାର ପାଞ୍ଚଟି ମୁଖ୍ୟ ଆଭିମୁଖ୍ୟର ବାଖ୍ୟା କରାଯାଇଛି । ସେଗୁଡିକ ହେଲା:

୧. ସମସ୍ତ ଚୁଗୁଲିବାଦୀ ସମାନ, ସେମାନଙ୍କ ମଧରେ କେହି ବଡ଼ ବା ଛୋଟ ନୁହଁନ୍ତି ।

୨. ସଦସ୍ୟମାନେ ନିଶାଗ୍ରସ୍ତ ହେଇ ବେଢ଼ଙ୍ଗିଆ ଅଶ୍ଳୀଳ ଚୁଗୁଲି କରି ଚୁଗୁଲିସାଥିଙ୍କୁ ଅଡୁଆରେ ପକେଇଲେ ସେମାନଙ୍କୁ ସପ୍ତାହେରୁ ଦୁଇ ସପ୍ତାହ ପର୍ଯ୍ୟନ୍ତ ସଦସ୍ୟପଦରୁ ନିଲମ୍ବିତ କରାଯିବ ।

୩. ଚୁଗୁଲି ପରି ଏକ ସୂକ୍ଷ୍ମ କଳାକୁ ଶାସ୍ତ୍ରୀୟ କଳାର ମର୍ଯ୍ୟାଦା ଦେବାକୁ ଉଦ୍ୟମ ହେବ ।

୪. ଜୀବନର ସବୁକଥାରେ ସମନ୍ୱୟତା ରଖିବାର ଆବଶ୍ୟକତା ଭଳି ଚୁଗୁଲିବାଦରେ ମଧ୍ୟ ସମନ୍ୱୟତା ରଖିବାର ଆବଶ୍ୟକତା ଅଛି । ପଞ୍ଜୀକୃତ ଚୁଗୁଲିବାଦୀମାନେ ମାସକୁ ଛତିଶ ଘଣ୍ଟାରୁ ଅଧିକ ଏଥିରେ ମାତିବେ ନାହିଁ । କିନ୍ତୁ ବର୍ଷରେ ଗୋଟିଏ ଦିନ (ଶ୍ରାବଣ ମାସ ଶେଷ ରବିବାର ଦିନ ଚୁଗୁଲିବ୍ରତ ପାଳନ ଅବସରରେ ଚୁଗୁଲିସାଥି ମାନେ ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଏବଂ ସଂଧ୍ୟାର ପ୍ରଥମ ପ୍ରହରରୁ ରାତ୍ରିର ମଧ୍ୟମ ପ୍ରହର ପର୍ଯ୍ୟନ୍ତ ନନ୍ ଷ୍ଟପ୍ ଚୁଗୁଲି କରିପାରିବେ ।

୫. ଚୁଗୁଲିର ପ୍ରଚାର ଓ ପ୍ରସାରରେ ଅଭିନବତ୍ୱ ଆଣୁଥିବା ଚୁଗୁଲିସାଥିମାନଙ୍କୁ ପ୍ରେରଣା ଦେବା ପାଇଁ ବାର୍ଷିକ ଚୁଗୁଲିରତ୍ନ, ଚୁଗୁଲିମଣି ଓ ଚୁଗୁଲି ଶିରୋମଣି ଏହିପରି ତିନୋଟି ପୁରସ୍କାର ପ୍ରଦାନ କରାଯିବ ।

ଏହି ଅବସରରେ ଚୁଗୁଲିର ଉପାଦେୟତା ବୁଝାଇବାକୁ ଯାଇ ସଂଘର ସଦସ୍ୟ ଚୁଗୁଲିସାଥି ବଗୁଲି ଭାଇ (ଚୁଗୁଲି ନାମ) ଗୋଟିଏ ଉଦାହରଣ ଦେଲେ ।

ଧରାଯାଉ ଆପଣଙ୍କ ଅଫିସ ମୁଣ୍ଡିଙ୍କ ସହ ଗୋଟେ ଆଲୋଚନା ହେଉଛି । ଚଟୁପଟଳ କରୁଥିବା ନୂଆ ଟୋକାକୁ ଅଧିକ ଗୁରୁତ୍ୱ ଦିଆଯାଉଛି । ଆପଣ ସବୁ ଜାଣି ବି ନିରୁପାୟ । ଧରାଯାଉ ଆଲୋଚନାର ବିଷୟବସ୍ତୁ: ଚିରନ୍ତନ ସତ୍ୟ ।

ଆପଣ ଉଦାହରଣ ଦେବାକୁ ଯାଇ କହିଲେ, "ସୂର୍ଯ୍ୟ ପୂର୍ବଦିଗରେ ଉଦୟ ହୁଏ ।" ଆପଣଙ୍କ ମୁଣ୍ଡି ମୁଣ୍ଡ ହଲେଇ କହିଲେ, "ହଁ, କିନ୍ତୁ ଏ କଥାକୁ ଆଉ ଟିକେ ବାଗେଇକି ବି କୁହାଯାଇପାରେ ।" ସେ ଟିକେ ଗମ୍ଭୀର ହେଇ ଭାବିଲେ । ଚଟୁ ତାଙ୍କ ମୁହଁକୁ ବିମୋହିତ ହେଇ ଚାହିଁ ରହିଲା ଓ ଆପଣଙ୍କ ମୁଣ୍ଡି କହିଲେ, "ସୂର୍ଯ୍ୟ ପଶ୍ଚିମ ଦିଗରେ ଅସ୍ତ ହୁଏ ।"

"ଆଜ୍ଞା ସାର୍, ଆଜ୍ଞା, ଆପଣ ଯାହା କହିଲେ! ଆପଣଙ୍କ ସବୁ କଥାରେ କି ସୂକ୍ଷ୍ମ ଜୀବନ ଦର୍ଶନ!"

ମୁଣ୍ଡି ଆପଣଙ୍କ ଆଡ଼କୁ ଅନେଇକି ସ୍ମିତ ହସିଲେ । ଆପଣଙ୍କ ପେଟ ଭିତରୁ ଦି ଚାରିଟା କଡ଼ା ଶବ୍ଦ ବାହାରି ଆସୁଥିଲା, ତାକୁ ଆପଣ ଭାରି କଷ୍ଟରେ ଢୋକିଲେ ।

ଆଲୋଚନା ଗ୍ଳିଲା ଗ୍ବୁଟୁ ଓ ମୁଣ୍ଡିଙ୍କ ଭିତରେ, ଆପଣ ନୀରବ ଦର୍ଶକପ୍ରାୟ ବସି ସେଠୁ କେମିତି ଖସିବେ ଚିନ୍ତା କଲେ ।

ବାହାରକୁ ଆସିଲା ପରେ କଅଣ କରିବେ ? ଏକଥାକୁ ମନ ଭିତରେ ଗ୍ଯପି ରଖିଲେ ଅସନ୍ତୋଷ ବଢ଼ିବ । ଦିନକର ତ କଥା ନୁହେଁ; ସବୁଦିନିଆ କଥା । ନିହାତି ଦି ଗ୍ବରିଟା ଚୁଗୁଲି ଛାଡ଼ିଦେଲେ ଯାଇ ମନ ହାଲୁକା ହେବ । ଏବଂ ସେଥିପାଇଁ ଆବଶ୍ୟକ ସମଭାବାପନ୍ନ ସମ୍ବେଦନଶୀଳ ଚୁଗୁଲିବାଦୀ ବନ୍ଧୁ ।

ଆପଣ ସେମିତି ବନ୍ଧୁଙ୍କୁ ଖୋଜୁଛନ୍ତି କି? ତେବେ ଡ଼େରି କାହିଁକି? ବିନାମୂଲ୍ୟରେ ଯଥା ଶୀଘ୍ର ଚୁଗୁଲିବାଦୀ ସଂଘର ସଦସ୍ୟ ହୁଅନ୍ତୁ । ଇଚ୍ଛୁକ ବ୍ୟକ୍ତିମାନେ ଶନିବାର, ରବିବାର ଓ ସରକାରୀ ଛୁଟିଦିନମାନଙ୍କରେ ସକାଳ ନଅଟାରୁ ଗ୍ବତି ଦଶଟା ମଧ୍ୟରେ ଓଡିଶାର ପୁରପଲ୍ଲୀରୁ ଆସି ଏକାଠି ହେଉଥିବା ଚୁଗୁଲି ସଦସ୍ୟମାନଙ୍କୁ ଭେଟି ପାରିବେ । ପୋଷ୍ଟସ୍ଥଳୀ ଠିକଣା: ଚୁଗୁଲିବାଦୀ ସଂଘ, ଚୁଗୁଲି ନଗର, ଭୁବନେଶ୍ୱର- ୪୨୦୪୨୦ । ନକଲି ପ୍ରତି ସାବଧାନ, ଚୁଗୁଲିବାଦୀ ସଂଘର ଅନ୍ୟ କୌଣସି ଶାଖା ନାହିଁ । ଆପଣ ଯଦି ନିଜ ଗାଁ ବା ସହରରେ ଏହି ଫ୍ରାଞ୍ଚାଇଜ୍ ଖୋଲିବାକୁ ଗ୍ବହୁଁଛନ୍ତି, ତେବେ ଉପରୋକ୍ତ ଠିକଣାରେ ସଭ୍ୟ ସଂଗ୍ରହ ଦାୟିତ୍ୱରେ ଥିବା ଚୁଗୁଲିସାଥି ନଟିଆଙ୍କ ସହ ଯୋଗାଯୋଗ କରନ୍ତୁ ।

ସଶରୀରେ ଆସି ପାରୁନଥିଲେ ଆମର ୱେବସାଇଟ୍ ଡବ୍ଲୁ ଡବ୍ଲୁ ଡବ୍ଲୁ ଡଟ୍ ଚୁଗୁଲିବାଦୀ ଡଟ୍ ଅର୍ଗରେ ନାମ ପଞ୍ଜୀକରଣ କରିବାକୁ ଅନୁରୋଧ । ଚୁଗୁଲିବାଦୀଙ୍କ ସହ ସାମାଜିକ ମାଧ୍ୟମରେ ଆପଣ ଯୋଡ଼ି ହେଇପାରିବେ: ଫେସବୁକ୍ ଚୁଗୁଲିବାଦୀ/ ଟ୍ୱିଟର ଚୁଗୁଲିବାଦୀ/ ଇନ୍ସଟା ଚୁଗୁଲି । ସଂଘର ହ୍ୱାଟ୍ସଆପ୍ ଗ୍ରୁପ୍ "ଜୟ ଚୁଗୁଲିବାଦୀ"ରେ ବର୍ତ୍ତମାନ ମୋଟ ବାରଶହ ବାର ସଦସ୍ୟ ଅଛନ୍ତି ଯେଉଁମାନେ ଚୁଗୁଲିର ଆଦାନପ୍ରଦାନ କରି ଜୀବନର ମଜା ଲୁଟୁଛନ୍ତି । ଏହି ଗ୍ରୁପର ଆରମ୍ଭ ପରେ ମାତ୍ର ଦୁଇସପ୍ତାହ ମଧ୍ୟରେ ମଧୁମେହ, ରକ୍ତଗ୍ବପ, କୋଷ୍ଠକାଠିନ୍ୟ ତଥା ମାନସିକ ଅବସାଦ ଭୋଗୁଥିବା ସଦସ୍ୟମାନଙ୍କର ସ୍ୱାସ୍ଥ୍ୟରେ ଅଭୁତପୂର୍ବ ଉନ୍ନତି ଆସିଛି । ତାହେଲେ ଆଉ ଦ୍ୱନ୍ଦ୍ୱ କାହିଁକି: ସମସ୍ତେ ଏକସ୍ୱରରେ କହିବାର ସମୟ ଆସିଛି—ଚୁଗୁଲିବାଦ ଜିନ୍ଦାବାଦ୍! ଚୁଗୁଲିବାଦୀ ଏକଜୁଟ ହୁଅ ।

(ଓଡିଶା ସମ୍ବାଦ, ୨୦୨୧)



# ୨୦୫୦: ଏକ ପ୍ରେମ କାହାଣୀ

"ପ୍ରେମ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଉଦ୍ଭାବନ ।" ରାଧିକା ପୁରୁଣା ଆଲବମଟିଏ ଓଲଟଉ ଓଲଟଉ କହିଲେ, "ସମାଜ ବ୍ୟବସ୍ଥାର ସ୍ଥାୟୀତ୍ୱ ପାଇଁ ଏ ଯୁଗାନ୍ତକାରୀ ଉଦ୍ଭାବନର ଆବଶ୍ୟକତା ଥିଲା । ଏ ସଂସାରରେ ସ୍ତ୍ରୀ ମଣିଷ ଆଉ ପୁରୁଷ ମଣିଷ ଭଲା କାହିଁକି ପରସ୍ପର ପାଇଁ ତିଆରି ହେବେ? କିନ୍ତୁ ଏହି ଉଦ୍ଭାବନଟି ବିବିଧ ତତ୍ତ୍ୱକୁ ଗୋଳିଆମିଶା କରି ମାନବିକ ସଂପର୍କ ମଧ୍ୟରେ ନୂଆ ଦିଗନ୍ତର ସନ୍ଧାନ କରିଛି ।"

ଦୂରଦର୍ଶନ ପରଦାରୁ ନଜର ନ ହଟେଇ ସମ୍ରାଟ ଉତ୍ତର ଦେଲେ, "ନୁହେଁ ଆଉ କଅଣ!"

"ଆଚ୍ଛା, ତୁମେ କେବେ ମୋତେ ତୁମ ଅତୀତ କଥା ତ କହିନ?"

"କଅଣ ଜାଣିବାକୁ ଚାହଁ?"

"ତୁମ ସ୍ତ୍ରୀ?"

"ପାଖାପାଖି ଚଉଦ ବର୍ଷ ହେଲାଣି ଛାଡ଼ପତ୍ର ହେଇପାଇଛି । ପୁଅଟିଏ, କାନାଡ଼ାରେ ରହେ ।"

ଏ କଥା କହୁ କହୁ ସମ୍ରାଟଙ୍କ ମନରେ ଅତୀତର କିଛି ଛବି ଭାସିଗଲା— ଆଜି ଗାଳି ବର୍ଷା, କାଲି ପ୍ରେମର ଝଡ଼, ଏମିତି ଚଉଦ ବର୍ଷ ପରେ ଘାଇଲା ହେଇ କେମିତି ବାଟ ଅଲଗା କରିବାକୁ ପଡିଥିଲା ।

"ଆଉ ବାହା ହେଲନି?"

ଏ ପ୍ରଶ୍ନଟି ସମ୍ରାଟଙ୍କ ମନର ଗୋଟେ ଦରଜ ଜାଗାକୁ ଛୁଇଁଦେଲା । ଘାଇଲା ମାଇଲା ହେଇ ବୁଲୁ ବୁଲୁ ତାଙ୍କ ଜୀବନକୁ ଆସିଥିଲା ଇନ୍ଦୁ । ସେମାନେ ଏକାଠି ଥିଲା ସମୟତକ ଜଗତ ଭୁଲି ହେଇଯାଉଥିଲା । କିନ୍ତୁ ଧୀରେ ଧୀରେ ସବୁ ବଦଳି ଗଲା । ସେ ନିଜେ ଅସୁରକ୍ଷିତ ଅନୁଭବ କଲେ ।

"ନାଁ, ଏକାଠି ଥିଲି । ସେ ବାହା ହେବାକୁ ଚାହିଁଲାନି ।"

"ଓହୋଃ, କଅଣ ଅସୁବିଧା ଥିଲା ?"

"ସେ ପୁରୁଣା କଥା ଘାଣ୍ଟିକି ଲାଭ କଅଣ ? ମୁଁ ଜଣକୁ ଭଲପାଇଲି ବୋଲି କଅଣ ମୁଁ ମହାତ୍ମା ପୁରୁଷଟିଏ ପାଲଟି ଯାଇଥାନ୍ତି ? ମୁଁ ଯାହାକୁ ଭଲପାଇବି, ତାକୁ ମୋର ଦୋଷ ଦୁର୍ବଳତା ସହ ତ ଭଲପାଇବି !"

"ତୁମେ ନିଜକୁ ଭଲ ବୁଝେଇ ଦେଇପାରିଛ ।"

ଦୀର୍ଘ ନିଶ୍ୱାସ ନେଇ ସମ୍ରାଟ କହିଲେ, "ତା ନ କରି ଆଉ କଅଣ ବାଟ ଅଛି ? ଆଉ ତୁମ କଥା କୁହ । ମୁଁ ତୁମକୁ ଯେତିକି ଦେଖୁଛି, ସେତିକି ବିସ୍ମୟ ହେଉଛି । ତୁମକୁ ଯେ ପରମ ପ୍ରେମିକା କରି ସୃଷ୍ଟି କରାଗଲା, ସେ ରହସ୍ୟ ମନେ ଅଛି ?"

"ହଁ, ମୋତେ ପ୍ରେମର "ଅ" ଠୁ "କ୍ଷ" ଅକ୍ଷର ଶିକ୍ଷା ଦିଆଯାଇଛି । ମୋର ଜାଆଁଳା ଭାଇ ମୋହନ ରୋବଟକୁ ବି । ଆମ ଭିତରେ କୃତ୍ରିମ ବୁଦ୍ଧିମତ୍ତା ଖୁନ୍ଦି ଦିଆଯାଇଛି । ଆଜି ପର୍ଯ୍ୟନ୍ତ ମଣିଷ ଆହରଣ କରିଥିବା ସବୁ ଜ୍ଞାନ କୌଶଳାଦିର ଭିତ୍ତିଭୂମିରେ ଆମେ ଠିଆ ହେଇଛୁ ।"

"ତୁମ ଭଳି ଯନ୍ତ୍ର ପ୍ରେମିକା ପାଇଁ ଯେତେବେଳେ ଲଟେରି ହେବା କଥା ବିଜ୍ଞାପନରେ ପଢ଼ିଲି, ଭାବିଲି ମୋର କଅଣ ସତରେ ଏତେ ଭାଗ୍ୟ ? ମୁଁ କଅଣ ତୁମକୁ ପାଇବି ? ସତରେ କଅଣ ମୋ ମନ ଯେମିତି ଚାହେଁ, ତୁମେ ସେମିତି ପ୍ରେୟସୀଟିଏ ହେବ ? କିନ୍ତୁ ତୁମେ କଳ୍ପନାତୀତ ।"

"କଅଣ ଭାବିଛ କି ? ମୁଁ କଅଣ ତୁମ ଭଳି ଏମିତି ହଉ ହଉ ହେଇଗଲି ନା କଅଣ ?" ଭୁବନମୋହିନୀ ହସଟିଏ ହସି ରାଧିକା କହିଲେ ଓ ସନ୍ଧ୍ୟାବେଳ ଚାହା ତିଆରି କରିବାକୁ ଆଗେଇଲେ ।

(ଓଡିଶା ସମ୍ବାଦ, ୨୦୨୧)



# ଜୀବନମୃତ୍ୟୁ

ଦେବର ପଡ଼ିଶାଘର ବୁଢ଼ା ହଠାତ୍ ସନ୍ଧ୍ୟାବେଳେ ମରିଗଲା । ବୁଢ଼ା ଶବଟାକୁ ଗୋଟେ ଧୋତି ଗୁଦରରେ ଗୁଡ଼େଇ ମୁଁ ଆଉ ଦେବ ଟେକି ଟେକି ଶ୍ମଶାନକୁ ଆଣିଲୁ, ଏଇ ଟିକେ ଆଗରୁ । କେତେ ଡାକ୍ତରଙ୍କ ପାଖକୁ ଗଲୁ, କେହି ମୃତ ପ୍ରମାଣ ପତ୍ରଟେ ଦେବାକୁ ମଙ୍ଗିଲେନି । ଜଣେ ଚିହ୍ନା ଡାକ୍ତର ଗୋଡ଼ହାତ ଧରି କିଛି ଅଧିକ ଟଙ୍କା ହାତରେ ଗୁଞ୍ଜି ହୃଦ୍‌ଘାତରେ ମୃତ ବୋଲି ପ୍ରମାଣପତ୍ରଟେ ଲେଖେଇ ଆଣିଲୁ । ସେଇ କାମରେ ଡେରି ହେଇଗଲା । ଏବେ ରାତି ଏଗାରଟା । ନୂଆବର୍ଷ କିଛିଦିନ ତଳେ ଯାଇଛି ।

ଦେବ ଶ୍ମଶାନ ଜଗୁଆଳିକୁ କାଠ ଯୋଗାଡ଼ କରି ଆଣିବାକୁ ଟଙ୍କା ଦେଇ ପଠେଇଛି । ମୁଁ ଶବ ପାଖରେ ବସିକି ଆମ ଖଟିବନ୍ଧୁଙ୍କ ନାଁ ଖୋଜି ଭ୍ରାମ୍ୟଭାଷରେ ଟିପୁଛି । ଆଉ ଦି ଚାରିଜଣ ଆସି ପହଞ୍ଚିଲେ ଦାହସଂସ୍କାର କାମକୁ ସୁବିଧା । ହେଲେ କାହା ଭ୍ରାମ୍ୟଭାଷ ବନ୍ଦ ତ ଆଉ କାହାର ଘଣ୍ଟି ବାଜି ବାଜି ରହୁଛି ।

"ସବୁ ମାଦରଚୋତ୍ ଗୁଡ଼ା ଏକାବେଳେ ମରିଗଲେ କି ବେ?" ମୁଁ ଦାନ୍ତ ରଗଡ଼ି କହିଲି ।

ବୁଢ଼ା ପୁଅଝିଅଙ୍କ ପାଖରେ ବାଙ୍ଗାଲୋରରେ ରହୁଥିଲା, ଭତ୍ତା ଟଙ୍କା ମାସକୁ ମାସ ପାଇବାରେ କଅଣ ଅସୁବିଧା ହେଇଥିଲା ବୋଲି ବୁଝିବାକୁ ଖୋର୍ଦ୍ଧା ଆସିଥିଲା । ଆଉ ଫେରିପାରିଲାନି । ମଲା ଖବର ଶୁଣି ବନ୍ଧୁବାନ୍ଧବ ସାଇପଡ଼ିଶା କେହି ପାଖ ମାଡ଼ିଲେନି । ଗାଡ଼ିଆଡ଼େ ବନ୍ଦ, ମହାମାରୀ ସଂକ୍ରମଣ ବଢ଼ିଚାଲିଛି । ଦେବ ମୋତେ ଡ଼ାକିଲା – "ଶବଟା କଅଣ ପଡ଼ିରହିବ? ଚାଲ୍, ଆମେ ଦିଜଣ ଶ୍ମଶାନକୁ ନେଇଯିବା । ଖଟିର ଆଉ ଦି ତିନିଟାକୁ ଡ଼କେଇବା, କାମ ତୁଟିବ ।"

ମୁଁ ସନ୍ଧ୍ୟାବେଳେ ଦୌଡ଼ିବାକୁ ବାହାରିଥିଲି, ସିଧା ଦେବ ପାଖରେ

ପହଞ୍ଚିଲି । ମୋ ଦେହରେ ପତଳା ଝାଳ ଜୁଡ୍ବୁଡୁ ଗଞ୍ଜି ଖଣ୍ଡେ ଯାହା । ଦୌଡ଼ାଧାପଡ଼ାରେ ଥଣ୍ଡା ଜଣା ପଡୁନଥିଲା, ଏବେ ଟିକେ ବସି ପଡ଼ିବାରୁ ଭରି ଥଣ୍ଡା ଲାଗୁଛି ।

ଦେବକୁ ବୁଢ଼ା ଝିଅ ପୁଣି ଫୋନ କଲା । ଦେବ ଏପଟୁ କହୁଥାଏ — "ହଁ, ଆପଣ ଜମା ବ୍ୟସ୍ତ ହୁଅନ୍ତୁନି । ଆମେ ସବୁ କରିବୁ । ସାଙ୍ଗମାନେ ଆସୁଛନ୍ତି । ହଁ, ହଁ, ମୁଁ ଭିଡିଓରେ ଦେଖେଇବି । କଅଣ ଆଉ କରିବା ? ଯାହା ଈଶ୍ୱରଙ୍କ ଇଚ୍ଛା । କାଠ, ଫୁଲ ସବୁ ବ୍ୟବସ୍ଥା ଆମେ କରୁଛୁ । ହଁ, ମୁଁ ଶେଷ ଯାଏଁ ରହିବି । ଅସ୍ଥି ରଖିବି..."

"ଦେବ ରେ, ମୁଁ ଝିଅ ଛୁଆଟେ ହେଇଥିଲେ ତୋତେ ଆଜି ଏଇନା ଶ୍ମଶାନରେ ବାହା ହେଇଥାନ୍ତି," ମୁଁ ତା କାନ୍ଧରେ ହାତ ପକେଇ କହିଲି, "କୁଆଡ଼େ ଗଲେ ଆମ ମାଦରଗ୍ରେଟ୍ ଦଳ ?"

"ନରେନ୍ଦ୍ର ଆସୁଛି ପା କହିଲା ।"

"ଶଳାଟା କୋଉଥିରେ ଆସୁଛି ? ଘଣ୍ଟେ ତଳେ କହିଥିଲା ଆସୁଛି ବୋଲି । ତା ଘରୁ ଦି କିଲୋମିଟର ବାଟ ହବ କି ନାହିଁ, ତାକୁ ଘଣ୍ଟେ ଲାଗୁଛି ?" କେତେ ଦୂର ଆସିଲାଣି ଜାଣିବାକୁ ମୁଁ ତା ସଂଖ୍ୟା ଲଗେଇଲି । ସେପଟୁ ନାରୀକଣ୍ଠରେ ଭ୍ରାମ୍ୟଭାଷ ବନ୍ଦ ଥିବା ଘୋଷଣା ଶୁଭିଲା ।

"ମାଦର୍ ଗ୍ରେଅଅଅଅଅଟ୍..." ମୁଁ ବିକଟାଳ ଚିତ୍କାରଟେ କଲି । ମୋ ଚିତ୍କାରରେ ଯୋଉ ଦିଟା କୁକୁର ପାଉଁଶ ଗଦାରେ ମୋଡ଼ିମାଡ଼ି ଶୋଇଥିଲେ ଉଠିକି ଭୁକିବା ଆରମ୍ଭ କଲେ । ଆମେ ଶ୍ମଶାନରେ ପଶିବା ବେଳେ ଭୁକାଭୁକି କରି ସେ ଦିଟା ସେଠି ଶୋଇ ଯାଇଥିଲେ । ଏବେ ଆମ ପାଖକୁ ଆସି ଶ୍ମଶାନ ଅଧୀକ୍ଷକ ହେଇଥିବା ଭଳିଆ ଲାଞ୍ଜ ହଲେଇ କଅଣ ହଉଛି ପଚ୍ଚରିବା ଭଙ୍ଗୀରେ ଅନେଇଲେ ।

"ହେଃ, ଯା ସ୍ୟାଡ଼େ," ଦେବ ସେ ଦିଟାକୁ ଘଉଡ଼େଇଲା ।

ମୋ ପକେଟରେ ଯୋଡ଼େ ସିଗାରେଟ ଥିଲା । ଦେବର ମୋର ଖଣ୍ଡେ ଖଣ୍ଡେ ଧରି ଧୂଆଁ ଛାଡ଼ିଲୁ । ମୋ ଦାନ୍ତକୁ ଦାନ୍ତ ବାଜୁଥାଏ । ଭାଗ୍ୟକୁ ଦେବ ପୂରାହାତ ମୋଟା ଜାମା ଖଣ୍ଡେ ପିନ୍ଧିଥିଲା । ଥଣ୍ଡାରେ ମୋ ଦେହ ହାତ କାଲୁଆ, ମୋତେ ନିଦ ବି ମାଡ଼ିଲାଣି । ମୁଁ ସନ୍ଧ୍ୟାବେଳେ କେଶର ବାଦ୍ ଦେଇ ଗ୍ଚରିଟା ସିଝାଅଣ୍ଡା

ଖାଇ ଦୌଡ଼ିବାକୁ ବାହାରିଥିଲି । କେଜାଣି କେମିତି ଭୋକ ମରିଯାଇଥିଲା । ଦେବ ଆଉ ମୁଁ ବୁଢ଼ାକୁ ଜଗିକି ବସି ରହିଲୁ । ଘଣ୍ଟେ ଗଲା, ଦି ଘଣ୍ଟା ଗଲା । କାଠ ଆସି ପହଞ୍ଚିଲାନି । ଥଣ୍ଡାରେ ମୋ ଦେହ ମୁଣ୍ଡ ହେମାଳ, ତଣ୍ଟି ଶୁଖି ଯାଉଥାଏ ।

"ଯେ ଲୋକଟା ଟଙ୍କା ନେଇ କୁଆଡ଼େ ପଳେଇଲାଣି ବୋଧେ । ଆମେ ବି ଗ୍ଲ୍ ପଳେଇବା," ମୁଁ ପବନ ମାଡ଼ ଅଟକେଇବାକୁ କାନରେ ହାତ ଦେଇ ଥୁରୁଥୁରୁ ହେଇ କହିଲି, "ସକାଳୁ ଆସି ବୁଝିବା । କୋଉ ବେଦ ଅଶୁଦ୍ଧ ହେଇଯିବ ଯେ?"

"ନା, ବୁଢ଼ାଟାକୁ ଏକା ଏମିତି..."

"ଆସିଛି ଏକା ଯିବି ମୁଁ ଏକା – ସମସ୍ତେ ଏକାରେ ମୋ ଭାଇ, ଗ୍ଲ୍ । ଦେଖ୍, ତୋର ଯେ ମଲାବୁଢ଼ା ପ୍ରତି ଦରଦ, ମୁଁ ବରଫମୁଣ୍ଡା ହେଲିଣି ।"

"ଟିକେ ସମ୍ଭାଳ," ଦେବ ମୋତେ ମିନତି କଲା ଭଳି କହି କୁକୁର ଦିଟା ଆଡ଼େ ଅନେଇଲା ।

ଆମେ ଯା ଭିତରେ ଭ୍ରାମ୍ୟଭାଷରେ ଲଗେଇ ଲଗେଇ କାହାକୁ ପାଇଲୁନି । ସମସ୍ତେ ଅପହଞ୍ଚ – ଏ ରାତିର କଣ୍ଟାବାଡ଼ ଡେଇଁ ମୃତ୍ୟୁ କି ମହାମାରୀ ଯୋଉଠି ସେମାନଙ୍କୁ ଛୁଇଁ ପାରିବନି ସେଠି ହୁଏତ ସୁରକ୍ଷିତ କୋଉ ଉଷୁମ୍ ମାଯା ଚାଦର ତଳେ ।

କେଇଟା ଦିନ ତଳେ ନୂଆବର୍ଷ ରାତିରେ ଆମେ ଧୂମ୍ ପିଆପିଇ କରିଥିଲୁ । ସାଥି ହେଇ ପୁରୁଣା ଅକ୍ଷଯ ମହାନ୍ତି ଗୀତ ଗାଇଥିଲୁ — ଲାଲ୍ ଟୁକୁ ଟୁକୁ ଓଠେ ତୋର ବଧୂଲି ଫୁଲ ଫୁଟେ...

"ବୁଢ଼ାଟା କି ଶାନ୍ତିରେ ଶୋଇଛି, ଦେଖୁଛୁ ଦେବ?"

"କେହି ଗୋଟେ ଆସିଲେନି," ଦେବ କ୍ଳାନ୍ତି ମିଶା ହତାଶାଭରା ସ୍ୱରରେ କହିଲା ।

"ସମସ୍ତେ ଶୋଇଛନ୍ତି ବେ । ରାତିରେ ଠିକ୍ ସମଯରେ ନ ଶୋଇଲେ ସକାଳୁ ଶୀଘ୍ର କେମିତି ଉଠିବେ? ସକାଳେ ମାଛହାଟକୁ ଯିବେ, ପରିବା ମୂଲେଇବେ, ସ୍ତ୍ରୀକୁ ସାଙ୍ଗରେ ନେଇ ବଜାର ବୁଲିବେ..."

ଦେବ ଭ୍ରାମ୍ୟଭାଷରେ ଘଣ୍ଟି ବାଜିଲା । ବୁଢ଼ାର ଝିଅ କି ପୁଅ କେଜାଣି, ସେ

କଥା ହେଲାନି । ଶଶ୍ମାନ ଦ୍ୱାରରେ ଦିଟା ଖୁଣ୍ଟରେ ଦିଟା ହଳଦି ଆଲୁଅବତି, ଗାଢ଼ ହେଉଥିବା କୁହୁଡ଼ି, କଲିଜାକୁ ଗ୍ରେଟମରା ରାତି, ଆଉ ଗୋଟେ ଶବକୁ ଜଗିକି ଦେବ ଓ ମୁଁ । ହଁ, ଅଦୂରରେ ଏଇନା ସୁପ୍ତ ଏଇନା ଜାଗ୍ରତ ଦିଟା କୁକୁର ।

ଦେବ ଆଣ୍ଠୁରେ ମୁହଁ ମାଡ଼ି ବସିଥାଏ ।

"ଦେବ...?" ମୋ ତଣ୍ଟିରୁ ଶବ୍ଦ ବାହାରିଲାନି । କୁହୁଡ଼ିରେ ମୋ ନାକଟା ରୁନ୍ଧି ହେଇଗଲା, କାନମୁଣ୍ଡରେ କିଏ ଯେମିତି ଛୁରିଟେ ଭୁସିଦେଲା । ମୁଁ ବୁଢ଼ା ଉପରୁ ଧୋତିଟା ଭିଡ଼ି ଆଣି ମୋ କାନମୁଣ୍ଡ ଦେହ ଢ଼ାଙ୍କି ଦେବ ପାଖରେ ଜାକିଜୁକି ହେଇକି ଗଡ଼ିପଡ଼ିଲି ।

(କ୍ରାନ୍ତିଧାରା ସୃଜନଧାରା, ୨୦୨୨)



# ଭୁବନେଶ୍ୱର

ଭୁବନେଶ୍ୱର ନିରୁଦ୍ଦିଷ୍ଟା ଜଣେ ରହସ୍ୟମୟୀ ନାରୀ । ତାକୁ ଦେଖିଥିବା ଲୋକେ ମନେ ପକାନ୍ତି, ସେ ନିରିମାଖୀ, ଏକବାରେ ମନୋଇ । ଟିଆପକ୍ଷିଆ ପଣତ ତାର ଲମ୍ବି ଥାଏ ଖଣ୍ଡଗିରିରୁ ଚନ୍ଦକା ଶେଷମୁଣ୍ଡ ଯାଏଁ — ତା ବୁକୁରେ ମୁହଁ ଗୁଞ୍ଜନ୍ତି, ଡ଼େଉଁଥାନ୍ତି ପଲେ ମାଙ୍କଡ଼ଛୁଆ ।

ଦିନେ ତାକୁ ଖୋଜି ଆସିଥିଲେ କେତେ ସପନ ବଣିକ । ଆଉ କେତେ ଚତୁର୍ମାସିଆ ପ୍ରେମିକ ।  କଥା ଦେଲେ, ରଖିବୁ ମନରେ ତୋତେ ସଜେଇବୁ ନିତି ଅପରୂପା ବଧୂଟିଏ ପରି । ଆଣିବୁନି କେବେ ତୋ ସମ୍ମାନରେ ଟିକେ ହେଲେ ଆଞ୍ଚ । ସେ ଦିନ ସବୁ ଥିଲା ମଧୁମୟ;  ଓଲଡ଼ ଟାଉନ ମହାଦେବ ମନ୍ଦିରରେ ପ୍ରାତଃ ଆରତିର ଘଣ୍ଟ, ଶଙ୍ଖଧ୍ୱନୀ, ଚମ୍ପା ଫୁଲର ମହକ ଭିତରୁ ବାରି ହେଇପଡୁଥିଲା ତା ଆତ୍ମାର ଅନ୍ତର୍ଧ୍ୱନୀ ।

ଭୁବନେଶ୍ୱର ନିର୍ବାକ୍ ଜଣେ ଆଶାହତ ନାରୀ  । ତାକୁ ଚିହ୍ନିଥିବା ପୁରୁଖା କୁହନ୍ତି ସେ କେମତି ବୁଝୁ ବୁଝୁ ଅଳିଅର୍ଦ୍ଦଳି, ଆଧୁନିକ ଝଲମଲ ଗୃଦରଟିଏ ଘୋଡ଼େଇ ହେଇ ପାଲଟିଗଲା ରାଜରାସ୍ତାରେ ବାୟାଣୀଟିଏ ।

ମନକୁ ହସେ, ମନକୁ କାନ୍ଦେ, ଗୁଣୁଗୁଣୁ ଗାଏ ପୁରୁଣା ଅଭୁଲା ଗୀତ – ଜନତା ମୈଦାନ କୁଟୀର ଶିଳ୍ପ ବଜାରରେ କେବେ ମାଷ୍ଟର କାଣ୍ଟିନ୍ ଗୋଲେଇ ପାଖରେ, ଆଉ ଯେବେ ଅସ୍ତ ସୂର୍ଯ୍ୟ ସିନ୍ଦୁର ଢାଳୁଥାଏ କୁଆଖାଇ ନଈପରେ ।

(ଓଡିଶା ସମ୍ବାଦ, ୨୦୨୧)



# ଆଇର ଶାଢ଼ୀ

ମୋ ଆଇର ପସନ୍ଦ ସମ୍ବଲପୁରୀ ସୂତା ଶାଢ଼ୀ । ତା ଛଡ଼ା ଆଉ କୋଉ ଶାଢ଼ୀ ସେ କେବେ ପିନ୍ଧେନା ।

ତାର ପ୍ରିୟ ରଙ୍ଗ ଆକାଶୀ ନୀଳ, ଶାଢ଼ୀରେ ଲାଲ୍ ଧଡ଼ି । ଶଙ୍ଖ ପଦ୍ମ କୁମ୍ଭ ମାଛ କି ମାଣିଆବନ୍ଧ ସୂତାକାମ ତାକୁ ଭାରି ମାନେ । ତା କପାଳରେ ବରକୋଳିଆ ସିନ୍ଦୁର ଟୋପା, ଆଉ ହାତରେ ଦିପଟ ସୁନା ଚୁଡ଼ି, ମୁଠେ ପାଣି କାଚ ।

ସାଧା କରି ଶାଢ଼ୀ ପିନ୍ଧେ ମୋ ଆଇ, କେବଳ ମୁହଁ ହାତ ଆଉ ଟିକେ ବେକ ଯାହା ଦିଶେ, ମଥାରୁ ଜମା ଖସେନି ଓଢ଼ଣା । ଆଜିକାଲି ଝିଅଙ୍କ ଶାଢ଼ୀ ପିନ୍ଧା ଦେଖି ଆଇ ଭାରି ଚିଡ଼େ । ଏମିତି ନାଭି, ପିଠି, ଛାତି ଦେଖେଇ ପିନ୍ଧେ କିଏ ଶାଢ଼ୀ?

ଆଇ ଶାଢ଼ୀ ପୁରୁଣା ହେଲେ ତାକୁ କାଟି ସେ ସିଲେଇ କରେ ଛୋଟ ଛୋଟ କନ୍ଥା । ବନ୍ଧୁବାନ୍ଧବ ସାହି ଭାଇ ଚିହ୍ନା ଜଣା ଯାହା ଘରେ ଛୁଆଟିଏ କୁଆଁ କୁଆଁ କାନ୍ଦେ, ଆଇ ଷଠୀପୂଜା ଆଗଦିନ ପଠାଇ ଦିଏ ସମ୍ବଲପୁରୀ ଧଡ଼ି ଲଗା କୁନି କୁନି କନ୍ଥା ।

ଅଜାଙ୍କ ଦେହାନ୍ତ ପରେ ଯୋଉ ବର୍ଷେ ବଞ୍ଚିଲା ଆଇ, ତାକୁ ସମସ୍ତେ ଯେତେ ବୁଝାଇଲେ – ଯୋଉ ସମ୍ବଲପୁରୀ ଶାଢ଼ୀ ପିନ୍ଧୁଥିଲ ତାକୁ ହିଁ ପିନ୍ଧ । କେଜାଣି କେମିତି ପାସୋରିଲା ନିଜର ରୁଚି, ମୋହ? ସେ ପିନ୍ଧିଲା କେବଳ ଧଡ଼ି ନ ଥିବା ଧଳା ଶାଢ଼ୀ ।

(କ୍ରାନ୍ତିଧାରା ସୃଜନଧାରା, ୨୦୨୨)



# ତୁମ ସହର

କାହାଣୀର ସହର ତୁମର ଏଇ ସହର । କାହାଣୀର ସହରରେ ଗଛ ବି କାହାଣୀ; ସେ ଗଛରେ କଢ଼ ଧରେ ପେନ୍ଥା ପେନ୍ଥା କାହାଣୀ, ଫୁଲ ହେଇ ଫୁଟେ ଯେତେ ସବୁ କାହାଣୀ ତା'ଠୁଁ ବେଶି ପତ୍ରଝଡ଼ା ଦେଉଥାଏ କାହାଣୀ । ତୁମ ସ୍ୱପ୍ନର ଏଇ ସହର ଯେ ଲମ୍ବା ଗୋଟେ କାହାଣୀ । ତୁମ ନିଜର ଅଧା କୁହା କାହାଣୀ ।

ତୁମ ସହରରେ ରାସ୍ତାଘାଟ, ଘର, ଗାଈଗୋରୁ, ଆଉ ଚଢ଼େଇ ବି କାହାଣୀ ।

ତୁମର ଏଇ ସହରରେ ଅଙ୍କାବଙ୍କା କାହାଣୀର ନଈ ସେପାରିରେ ନିତି ସୂର୍ଯ୍ୟ ଉଁଏ, ସୂର୍ଯ୍ୟ ବୁଡ଼େ, କାହାଣୀଟିଏ ହେଇ ଉଡ଼ିଯାଏ ଶଙ୍ଖଚିଲ ଭାଇ, କାହାଣୀର ସୂକ୍ଷ୍ମ କାକର ଜାଲ ପଡ଼ିରହେ ଗୁଳ୍ମରେ ଗୁଳ୍ମରେ ।

କାହାଣୀର ସହର ତୁମର ଏଇ ସହର ।

କାହାଣୀର ସହରରେ କେବେ ଶେଷ ହୁଏ କେଉଁ କାହାଣୀ? (ପରିଶେଷରେ ତୁମେ ଆଉ କଅଣ କି? କେବଳ କାହାଣୀଟିଏ ତ ।)

(ସେଇଠୁ ଆରମ୍ଭ, ୨୦୨୧)



# ସାହିତ୍ୟ କର୍ମଶାଳା ଓ ଚଗଲି ଝିଅ

ମୁଁ ବାହାରିଛି ଗୋଟେ ସାହିତ୍ୟ କର୍ମଶାଳାକୁ — ଯଦିଓ ମୋତେ କୌଣସି ଆନୁଷ୍ଠାନିକ ନିମନ୍ତ୍ରଣ ମିଳିନାହିଁ, ସେଇଠୁ କଅଣ ହେଲା — ଆଜି ଖବରକାଗଜରେ ବାହାରିଛି, ସାହିତ୍ୟିକ ତଥା ସାହିତ୍ୟପ୍ରେମୀମାନଙ୍କୁ ବହୁ ସଂଖ୍ୟାରେ ଏହି କର୍ମଶାଳାରେ ଯୋଗ ଦେବାକୁ ଆୟୋଜକମାନେ ଅନୁରୋଧ କରିଛନ୍ତି । ମୁଁ ତ ମଠରେ ଖାଇ ଖଟରେ ଶୋଇ ଆକାଶ ଦେହରେ ଇନ୍ଦ୍ରଧନୁ ରଙ୍ଗ ନେଇ ଅସରନ୍ତି କାହାଣୀ ଲେଖିବାର ସ୍ୱପ୍ନରେ ମଶଗୁଲ, ମୁଁ ଘରୁ ବାହାରନ୍ତି କି ? କିନ୍ତୁ ଏହା ଯେ ଏକ ଅଭିନବ ସାହିତ୍ୟ କର୍ମଶାଳାର ପ୍ରତିଶ୍ରୁତି ନେଇ ଆସିଛି ! ସ୍ଥାନ — ନନ୍ଦନକାନନ ଚିଡ଼ିଆଖାନା । କର୍ମଶାଳାଟି କେଉଁ ପ୍ରସଙ୍ଗକୁ ନେଇ ହେବ ଆକ୍ଷରିକ ଭାବେ ମୁଁ ମନେ ରଖିପାରିନି, ହେଲେ ଏୟା ଯେ ଓଡ଼ିଆ ସାହିତ୍ୟରେ ବର୍ତ୍ତମାନ ଭାବବସ୍ତୁର ଘୋର ଅଭାବ — ପାଠକମହଲର ନୀରବ ପ୍ରତିକ୍ରିୟା, ପୁସ୍ତକମେଳା ଜନଶୂନ୍ୟ — ଏହାକୁ ଧ୍ୟାନରେ ରଖି ଏହି ବିଶାଳ କର୍ମଶାଳାର ଆୟୋଜନ । ମୋର ପରିଚୟ ଆଉ କଅଣ ଦେବି ? ଆପଣମାନେ ଯାହା କିଛି ଗୋଟେ ଭାବି ଦେଇପାରନ୍ତି ।

ହଁ, ହଠାତ୍ ଏମିତି ଗୋଟେ ରାଜ୍ୟସ୍ତରୀୟ କର୍ମଶାଳାର ପ୍ରୟୋଜନ କଅଣ ? କଥା କଅଣ କି, ନିକଟରେ ଗୃହଞ୍ଚଲ୍ୟକର ଖବରଟିଏ ବହୁଳ ପ୍ରସାରିତ ଦୈନିକ ଖବରକାଗଜରେ "ପ୍ରଭାବହୀନ ଓଡ଼ିଆ ସାହିତ୍ୟ" ଶୀର୍ଷକରେ ବାହାରିଥିଲା: କୌଣସି ଏକ ଗୁପ୍ତ ପରୀକ୍ଷାଗାରରେ ଦଳେ ମାଇ ଅଣ୍ଡିରା ମୂଷାଙ୍କ ଉପରେ ଏକ ବିଶେଷ ପରୀକ୍ଷଣ କରାଯାଇଥିଲା । ମୂଷାଦଳଙ୍କୁ ଓଡ଼ିଆ କବିତା, ଗପ, ଉପନ୍ୟାସ ଓ ପ୍ରବନ୍ଧ କ୍ରମାଗତ ଏକୋଇଶ ଦିନ ପର୍ଯ୍ୟନ୍ତ ପଢ଼ି ଶୁଣାଯାଇଥିଲା (ପ୍ଲିଜ୍ ଡୋଣ୍ଟ୍ ଟ୍ରାୟ ଦିସ୍ ଆଟ୍ ହୋମ୍) । କିନ୍ତୁ ଆଶ୍ଚର୍ଯ୍ୟର

କଥା ଏହା ଯେ ମୂଷାମାନଙ୍କ ଉପରେ ଏହି ସାହିତ୍ୟ ପଠନ କୌଣସି ପ୍ରଭାବ ପକାଇ ପାରିନଥିଲା । ସପ୍ତାହେ ବାଦ୍ ପୁଣି ଏକୋଇଶ ଦିନ ସେହି ପରୀକ୍ଷାର ପୁନରାବୃତ୍ତି କରାଯାଇଥିଲା, କିନ୍ତୁ ଏଥର ମଧ୍ୟ ଫଳାଫଳ ସେୟା ଥିଲା । ମୂଷାଦଳ ପ୍ରତିକ୍ରିୟାଶୂନ୍ୟ ଥିଲେ । ପୁଣିଥରେ ଏହି ପରୀକ୍ଷା ଲୋକପ୍ରିୟ ପେଶାଦାର କାହାଣୀ ପଠନକାରୀମାନଙ୍କ ଦ୍ୱାରା କରାଯାଇଥିଲା । କିନ୍ତୁ ଅନ୍ତିମ ଥର ମଧ୍ୟ ଆଶାନୁରୂପ ଫଳ ମିଳି ନଥିଲା । ମୂଷାଦଳଙ୍କ ମଧ୍ୟରେ ସାମାନ୍ୟ ମାତ୍ର ଶାରିରୀକ ବା ମାନସିକ ପ୍ରତିକ୍ରିୟା ଲକ୍ଷ୍ୟ କରାଯାଇନଥିଲା । ଏହି ସମ୍ବାଦ ପ୍ରକାଶ ପାଇବା ପରେ ଆମ ସାହିତ୍ୟିକ ମହଲରେ ଏକ ପ୍ରକାର ଗୁଞ୍ଜଲ୍ୟ ଓ ତତ୍ପରତା ଖେଳିଯାଇଛି ।

ମୁଁ ଯାହା ଶୁଣିବାକୁ ପାଇଲି ଆୟୋଜକମାନଙ୍କର ପ୍ରଥମ ପସନ୍ଦ ସ୍ଥାନ ଥିଲା ଝାରପଡ଼ା କାରାଗାର । କିଛି ଆୟୋଜକ ଅନୁରୋଧ ନେଇ ଝାରପଡ଼ା କାରାଗାର ଅଧୀକ୍ଷକଙ୍କ ପାଖକୁ ଆବଶ୍ୟକ ବିଶେଷ ଅନୁମତି ପାଇଁ ଯାଇଥିଲେ । କାରାଗାରରେ ଗୋଟିଏ କବିତା ଓ ଗଳ୍ପ ପାଠୋତ୍ସବ କଲେ ତାହା କିପରି ଆସାମୀଙ୍କର ହୃଦୟ ପରିବର୍ତ୍ତନ ତଥା ଆଧ୍ୟାତ୍ମିକ ଉତ୍ତରଣରେ ସାହାଯ୍ୟ କରିବ ଆଦି ଅନେକ କଥା ଆୟୋଜକ ଆମର ସଦା ଉଦ୍ୟମଶୀଳ ଭାଇ ଉଦୟଭାନୁ କାରାଗାର ଅଧୀକ୍ଷକଙ୍କୁ ବଖାଣି କହିଲେ । ଆଉ ମଧ୍ୟ ପୁଲିସବାବୁଙ୍କ ଉପସ୍ଥିତି ଓ କଡ଼ା ନିରୀକ୍ଷଣରେ ଅନ୍ତେଃବାସୀଙ୍କ ସହ ଆଳାପ, ସେମାନଙ୍କ ଅପରାଧୀ ମନୋବୃତ୍ତିର ପ୍ରତ୍ୟକ୍ଷ ଅନୁଭବ ଏବଂ କିଛି ବଛାବଛା ଆସାମୀଙ୍କ ସହ ସାହିତ୍ୟିକମାନଙ୍କର ଭାବ ଆଦାନପ୍ରଦାନର ପ୍ରସ୍ତାବ ଦେଲେ । ସମସ୍ତେ କାରାଗାରର ବନ୍ଦ କୋଠରି ବାହାରୁ ଆସାମୀଙ୍କୁ ଦେଖି ନିଜ ନିଜ ସୃଜନ ପାଇଁ କଞ୍ଚାମାଲ ନେଇପାରିବେ । କାହିଁକି, ବିଶ୍ୱବରେଣ୍ୟ ଉପନ୍ୟାସ ସମ୍ରାଟ ଦସ୍ତୋଭସ୍କି ପୁଣି ସାଇବେରିଆରେ ଦିନ କଟେଇଥିଲେ କି ନାହିଁ? ସେଇଥିପାଇଁ ତ ତାଙ୍କ ସାହିତ୍ୟକୃତିରେ ଜୀବନଯାତନାର ଗଭୀର, ଅନବଦ୍ୟ ରୂପ! କାରାଗାର ଅଧୀକ୍ଷକ କେତେବେଳେ ଭାଇ ଉଦୟଭାନୁ ମୁହଁକୁ ଗ୍ଭହୁଁଥିଲେ ତ କେତେବେଳେ ସାମ୍ନା ଟେବୁଲରେ ଖୋଲା ପଡ଼ିଥିବା ଫାଇଲ ଆଡ଼କୁ ଗ୍ଭହୁଁଥିଲେ । ଭାଇ ଉଦୟଭାନୁ ନିଜର ଅଭିପ୍ରାୟ କହି କେଇ ମିନିଟ୍ ଚୁପ୍ ରହିଲେ । ଅଧୀକ୍ଷକ କିଛି ସମୟ ତାଙ୍କ ମୁହଁକୁ ଓ କିଛି ସମୟ କୋଠରିର ଛାତକୁ ଗଭୀର ଚିନ୍ତାରେ ଅନେଇ "ହଉ ତାହେଲେ ଆପଣମାନେ ଆସନ୍ତୁ" କହି ଗୋଟେ ଜରୁରୀ ବୈଠକକୁ ବାହାରି ଗଲେ ।

ଆଉ ତାପରେ କର୍ମଶାଳାର ସ୍ଥାନ ରୂପେ ନନ୍ଦନକାନନ ସ୍ଥିର କରାଗଲା ।

ଉଦ୍ଦେଶ୍ୟ ମନଅରଣ୍ୟରେ ଲୁକ୍କାୟିତ ହିଂସ୍ର ପ୍ରବୃତ୍ତିର ସନ୍ଧାନ; ଆଶା ସେଥିରୁ ହୁଏତ ସୃଷ୍ଟି ହେବ କାଳମାନ୍ୟ ଗଳ୍ପ, ଉପନ୍ୟାସ, କବିତା, ପ୍ରବନ୍ଧ । କିନ୍ତୁ କିଛି ଉଡ଼ାକଥା — କାଳେ ଆୟୋଜକମାନଙ୍କ ମଧ୍ୟରେ କିଛି ଚୁଗୁଲିଆ ବଗୁଲିଆ ଅଛନ୍ତି, ଆଉ ସେମାନଙ୍କର କିଛି ଭିତିରି ଏଜେଣ୍ଡା ଅଛି । ସତ କହିବାକୁ ଗଲେ, କୌଣସି ଗଭୀର ଆଲୋଚନା ନୁହେଁ, ସେଇ ଏଜେଣ୍ଡାର ଜିଜ୍ଞାସା ମୋତେ କର୍ମଶାଳା ଆଡ଼େ ଆଗେଇବାକୁ ପ୍ରବର୍ତ୍ତଉଛି ।

ବସାରୁ ବାହାରୁ ବାହାରୁ ସାମ୍ନା ହୋଟେଲରୁ ହବିବ ଭାଇ ହୁରି ପକାଇଲା, "କିହୋ, ସକାଳୁ ଚଇନି ଚିକ୍କଣ? କଥା କଅଣ?"

ମୁଁ ଯେ ଛୁଟିଦିନ ସକାଳେ ଦଶଟା ଆଗରୁ ଉଠିଛି ତା ଏକ ବ୍ୟତିକ୍ରମ । ମୋତେ ବଗ୍ ଘୁଗୁନି ଥାଳିଏ ଧରେଇ ଦେଇ କହିଲା, "ଦିପହରକୁ ଆସିବ ଟି? ମନେ ଅଛି ତ ଆଜି ଡବଲ ଡୋଜ ବିରିୟାନି ବାର ।"

ମୁଁ ଶୁକ୍ରବାର ରାତିରୁ ସୋମବାର ସକାଳ ଯାଏ ଡମଣାରେ ଥିବା ଆମ ଚଡ଼୍ଢିବଡିଜମାନଙ୍କର ଗୋଟେ ସ୍ୱତନ୍ତ୍ର ବସାରେ ରହେ । ଆମେ ତା ନାଁ ଦେଇଛୁ ଧୂଆଁଘର । ଆଖପାଖରୁ, ପ୍ରବାସରୁ ଯେ କେହି ବନ୍ଧୁ ଆସିଲେ ତାକୁ ଆମେ ମଦ ବୋତଲ ଧରେଇ ଏଇଠି ସଙ୍ଖୋଳୁ । ବିଦେଶରେ ଯନ୍ତ୍ରୀ ହେଇ ପ୍ରଚୁର ଟଙ୍କା ଠୁଳ କରିଥିବା ଆମର ବଦାନ୍ୟ ବନ୍ଧୁ ସୌରଭ ମଲ୍ଲିକର କଷ୍ଟ ଅର୍ଜିତ ଡଲାରରେ କିଣା ହେଇଥିବା ଏଇଟି ଗୋଟିଏ ତିନି କୋଠରି ବିଶିଷ୍ଟ ଘର; ଏହାକୁ ସେ କୃତକୃତ୍ୟ ହେଇ ଚଡ଼୍ଢିବଡିଜଙ୍କ ଉଦ୍ଦେଶ୍ୟରେ ନିବେଦନ କରିଦେଇଛି । ଆମ ଧୂଆଁଘର ଠିକ୍ ସାମ୍ନାରେ ଧୂଆଁଦାର ଖାନସାମା ମହମ୍ମଦ ହବିବଙ୍କର ହୋଟେଲ ।

ମୁଁ ମଝିରେ ମଝିରେ କବିତାରେ ହାତ ମାରେ । ସେମିତି ଦିନେ ଗୋଟେ କବିତାର ଖିଅ ଧରୁ ଧରୁ ହବିବ ଭାଇ ଟିପ୍ପଣୀ କଲା, "କଅଣ ସବୁ ଲେଖୁଛ, ମୋ ଡବଲ ଡୋଜଠୁଁ କଅଣ ବଳି ପଡ଼ିବ?"

ଯଦିଓ ହବିବ ଭାଇର କବିତା ବୁଝିବାର ଶକ୍ତି ଅବା କେତେ ବୋଲି ମୁଁ କଥାଟାକୁ ସେତେବେଳେ ଗୁରୁତ୍ୱ ଦେଲିନି, ହେଲେ ପରେ ଯେତେବେଳେ ମୁଁ ଲେଖି ବସେ, କାହିଁକି କେଜାଣି ତା କଥାଟା ବାରମ୍ବାର ମୋ ମନରେ ବିଛୁଆତି ଛାଟ ଭଳି ବାଜେ । ହବିବ ଭାଇର ଏଇ ଡବଲ ଡୋଜ ବିରିଆନି ପ୍ରସ୍ତୁତି ସଂକ୍ଷେପରେ କହି ମୁଁ ସାହିତ୍ୟ ଆଡ଼େ ମୁହେଁଇବି ।

ହବିବ ଭାଇର ପରିଷ୍କାର ଛୋଟ ହୋଟେଲରେ ସବୁ ଉପଲବ୍ଧ —

ଦେଶୀୟ, ମହାଦେଶୀୟ, ନବାବୀ ଖାଦ୍ୟ । ହେଲେ ତା ହୋଟେଲ ବିରିଆନି ପାଇଁ ପ୍ରସିଦ୍ଧ । ବିରିଆନି ଖାସୀ ନ ହେଲେ ଦେଶୀ କୁକୁଡ଼ା ପଡ଼ି ହୁଏ । କିନ୍ତୁ ନିରାମିଷାସୀଙ୍କ ପାଇଁ  ସୋୟାବିନ, କାପ୍ସିକମ, ବେବିକର୍ନ ଆଉ ଖରାଦିନେ ପଣସକଠା ପଡ଼ି ମଧ୍ୟ ହୁଏ । ମାଟିହାଣ୍ଡିରେ ମାଂସ କଷିବା ଆଗରୁ ଦହିରେ ଗୋଳେଇ ଘଣ୍ଟେ ଖଣ୍ଡେ ରଖାଯାଇଥାଏ, ମାଂସ କଷା ଗଲା ପରେ ହାଣ୍ଡି ମୁହଁରେ ସଫାକନା ବନ୍ଧାହୁଏ । ପିତ୍ତଳ ଗମଲାରେ ଲମ୍ବା ସରୁ ଧୁଆ ଚାଉଳ ଡ଼ବ ଡ଼ବ ଗରମ ପାଣିରେ ପକା ହେଇ ଫୁଟିଲା ଫୁଟିଲା ହେଲାରୁ ଗଳାହୁଏ । ବର୍ତ୍ତମାନ ବଡ଼ ବଡ଼ ଦରସିଝା ଆଳୁର ଗୋଟେ ମୁଣ୍ଡ କଣା କରି ଭିତର କୋରି ତା ଭିତରେ ଭଜା ଚୁନ୍ ଚୁନ୍ କଟା ପିଆଜ ଗାଜର ଧନିଆ ପତ୍ର ପୂରେଇ ମୁହଁ ବନ୍ଦ କରି ଅଳ୍ପ ଆଞ୍ଚରେ ତେଲରେ ଭାଜି ଅଲଗା ରଖାହୁଏ । ବିରିଆନି ପ୍ରସ୍ତୁତିରେ ଲାଗେ ଅଠର ମସଲା — ଗୁଜୁରାତି, ଅଳେଇଚ, ଡାଲଚିନି, ଲବଙ୍ଗ, ତେଜପତ୍ର, ସାହିଜୀରା, ଚକ୍ରିଫୁଲ, ଜାଇଫଳ, ଜାଇତ୍ରୀ, ଶୁଖିଲା ଲଙ୍କା, ଗୋଲମରିଚ, ଗୋଟା ଧନିଆ, କଳାଜୀରା, ମେଥି, ପାନମହୁରୀ, ହେଙ୍ଗୁ, ଶୁଣ୍ଠି, ଜୁଆଣି । ୟା ଛଡ଼ା କାଜୁ, କିସମିସ୍, ବସାଦହି, ସରୁ ସରୁ କଟା ପିଆଜ, ଅଦା ରସୁଣ ବଟା, ପୁଦିନା ପତ୍ର, କଞ୍ଚାଲଙ୍କା, ଧନିଆ ପତ୍ର ଆହୁରି କେତେ କଅଣ ମୋର ମନେ ପଡୁନି) । ଶୁଖିଲା ମସଲାକୁ ଗରମ ଲୁହା କଡ଼େଇରେ ହାଲୁକା ଭାଜି ଗୁଣ୍ଡ କରି ଅଲଗା ରଖାହୁଏ । ଗରମ ତେଲରେ ଅଦାରସୁଣ ବଟା ଆଉ କଟା ପିଆଜ ମସଲା କଷି ଅଠର ମସଲା ଗୁଣ୍ଡ ମିଶାଇ ଗଳାଭାତରେ ମାଂସ, ମସଲା ଓ ଷ୍ଟଫ୍ଡ୍ ଆଳୁ ପରସ୍ତ ପରସ୍ତ ରଖି ଅଳ୍ପ ପାଣି ଦେଇ କାଶ୍ମୀର ମାର୍କା କେଉଁ ଅସଲି ଜାଫ୍ରାନ୍ କେଶର ଛିଞ୍ଚି ଆଉ ଖାଣ୍ଟି ଗୁଆଘିଆ ଡ଼ଙ୍କିଏ ଢାଳି ଗମଲା ମୁହଁ ବାନ୍ଧି ପୁଣି ଅଳ୍ପ ଆଞ୍ଚରେ ବସେଇ ଓହ୍ଲେଇ ଦେବା ପରେ ଟିକେ ମିଠା ଅତର ଆଉ ଗୋଲାପ ଜଳ ଛିଞ୍ଚି ଦିଆହୁଏ । ଯେକୌଣସି ଅବସାଦ ଔଷଧଠାରୁ ଏହା ବେଶି କାମ୍ କରେ ବୋଲି ଆମେ ହବିବ ଭାଇର ବାରମାସିଆ ଗରାଖ ଦାବି କରୁ ।

"ଦେଖୁଛି" କହି ମୁଁ ଉଠିଲି ଆଉ ନନ୍ଦନକାନନ ରାସ୍ତାରେ ଆମ ଧୂଆଁଘର ସେକେଣ୍ଡ ହାଣ୍ଡ କମନ୍ ବାଇକ୍ ଖଣ୍ଡକ ଛୁଟେଇ ଦେଲି । ଡମଣାରୁ ବେଶି ସମୟ ଲାଗିଲାନି । ନନ୍ଦନକାନନ ଆଗରେ ପହଞ୍ଚି ଦେଖିଲି ବେଶ୍ ଭିଡ଼ । କେହି କେହି ସାହିତ୍ୟିକ ଟିକଟ କାଟୁଥିବା ଦେଖିଲି । ମୁଁ ନିଜେ ଧାଡ଼ିରେ ଠିଆ ହେଇ ଟିକଟ ଖଣ୍ଡେ କାଟିଲି ।

ଫାଟକ ଭିତରକୁ ଯାଇ ଏଣେ ତେଣେ ଆଖି ପକେଇଲି ଆଉ ଅନତି

ଦୂରରେ ଆମ ସାହିତ୍ୟିକମାନେ ରୁଣ୍ଡ ହେଇଥିବା ଦେଖିଲି । ଯେକୌଣସି ପଞ୍ଚତାରକା ହୋଟେଲରେ ଆଜିକାଲି ଯୋଉ ସବୁ ଏକ୍ସକ୍ଲୁସିଭ ସାହିତ୍ୟ ମହୋତ୍ସବ ହଉଛି ତା ଅପେକ୍ଷା ଆଜିର କର୍ମଶାଳାରେ ଯୋଗଦାନ ବେଶି, ଯଦିଓ ସେସବୁ ସ୍ଥାନରେ ଜାଜ୍ୱଲ୍ୟମାନ ହାଇବ୍ରାଓ ଫେଷ୍ଟିଭଲିଷ୍ଟ ଓ ଫେଷ୍ଟିଭଲିଷ୍ଟାମାନେ କାଇଁ ଆଖିରେ ପଡୁନଥିଲେ । ଉପସ୍ଥିତମାନଙ୍କ ମଧ୍ୟରେ ଥିଲେ ସାହିତ୍ୟର ପ୍ରପିତାମହ ଆଜ୍ଞାମାନେ, ଓଡ଼ିଶାର ଅର୍ଥନୀତିକୁ ଶିଖର ଛୁଆଇଁଥିବା ପ୍ରକାଶକ, ପଙ୍କରୁ ପଦ୍ମଙ୍କୁ ଛାଣି ଆଣିଥିବା ସଂପାଦକ, ପରିମଳ ବିଶ୍ୱାସୀ ସମାଲୋଚକ, ଓଡ଼ିଆ ଅସ୍ମିତାକୁ ଦେଶ ବିଦେଶରେ କମ୍ପଉଥିବା ଅନୁବାଦକ, ତଥା "ଅ" ପାଖରେ ଗାରଟଣା ସର୍ଜକମାନେ । ଏବଂ ସର୍ବୋପରି ମୋ ଭଳିଆ କିଛି ଫ୍ରିଞ୍ଜ୍ ଏଲିମେଣ୍ଟ ।

ପ୍ରତି ଅ ଶ୍ରେଣୀୟ ସଭାସମିତିରେ ମୋଟାମୋଟି ତିନି ପ୍ରଜାତିର ସାହିତ୍ୟିକ ଦେଖାଯାଆନ୍ତି ବୋଲି କେହି କେହି ବିଶେଷଜ୍ଞ ମତ ଦେଇଥାନ୍ତି ।

ପ୍ରଥମ ଶ୍ରେଣୀ — ଯେଉଁମାନେ ମଞ୍ଚ ଉପରେ ଅଧିଷ୍ଠିତ । ଏହି ଶ୍ରେଣୀର ଆମ ଗଇଜରେ ସମୁଦାୟ ହାତ ଆଙ୍ଗୁଳି ସଂଖ୍ୟାରୁ କମ୍ କେତେଜଣ ମାତ୍ର ହିଁ ଅଛନ୍ତି । ସେମାନଙ୍କ ପାଖରେ ଥାଏ କିଛି ବିଶେଷ ବଳ: କ୍ଷମତାବଳ, ଧନବଳ, ଭାଇବଳ, ସ୍ୱାମୀବଳ ଅବା ବୃତ୍ତିବଳ — ତ ସେମାନେ ବାହୁବଳୀ । ସେମାନଙ୍କ ଦ୍ୱାରା ଓ ସେମାନଙ୍କ ଉପରେ ଫିବର୍ଷ ପାଞ୍ଚ ଛଅଟି ବହି ବାହାରେ, ବହିଗୁଡ଼ା ଭିନ୍ନ ଭିନ୍ନ ଭାଷାରେ ଅନୁବାଦିତ ହୁଏ, ପ୍ରତି ସପ୍ତାହରେ କୌଣସି ନା କୌଣସି ବହୁଳ ପ୍ରସାରିତ ପତ୍ରିକାରେ ଲେଖା, ଖବରକାଗଜରେ ସାକ୍ଷାତକାର ବାହାରେ । ଏବଂ ପୁରସ୍କାର ଦୌଡ଼ରେ ସେମାନେ ଚିରକାଳ ସବାଆଗରେ — ଯଦି ଜଣେ ପ୍ରତିଦ୍ୱନ୍ଦୀ କବି ପାରିଜାତ ପୁରସ୍କାର ପାଇଲେ, ଅନ୍ୟ ଜଣେ ବ୍ରହ୍ମକମଳ ପୁରସ୍କାର ପାଇବା ନ ଯାଏଁ ଦୁନିଆ ଏପଟ ସେପଟ କରିଦେବେ । ଯଦି ପ୍ରତିଦ୍ୱନ୍ଦୀ ଗାଳ୍ପିକ ରକ୍ତକରବୀ ପୁରସ୍କାର ପାଇଲେ, ଅନ୍ୟ ଜଣକ ସୁଗନ୍ଧରାଜ ପୁରସ୍କାର ପାଇବା ନ ପର୍ଯ୍ୟନ୍ତ ଶାନ୍ତିରେ ନିଶ୍ୱାସ ମାରିବେନି । ଯଦି ଜଣେ ନୀଳ ଅପରାଜିତା ପାଇଲେ ତ ଆର ଜଣକ ଧଳା ଅପରାଜିତା ପାଇବାକୁ ରାତିଦିନ ଏକ କରି ଲାଗିପଡ଼ିବେ । ସେ ଯାହାହେଉ ଏମାନେ ପ୍ରତ୍ୟେକେ ନୀଳ ଅପରାଜିତା, ଧଳା ଅପରାଜିତା, ବ୍ରହ୍ମକମଳ, ସୁଗନ୍ଧରାଜ, ରକ୍ତକରବୀ, ପାରିଜାତ ପରି ନାମୀଦାମୀ ପୁରସ୍କାର ଆଗପଛ ହେଇପାଆନ୍ତି । କହିବା ଅନାବଶ୍ୟକ – ଏମାନଙ୍କୁ କେହି ଅଟକେଇ ପାରିବେନି । (ଅଟକାଇବାର ପ୍ରୟୋଜନ ବି କଅଣ ?)

ଏହି ବଳବନ୍ତ ପୁରସ୍କାରମଣ୍ଡିତ ବିଶିଷ୍ଟମାନଙ୍କୁ ଦେଖିଲେ ମୋର ପିଲାଦିନ

ବାନ୍ଧବୀ ମନୋରମା ମହାନ୍ତି ଓରଫ୍ ରେମା କଥା ମନେ ପଡ଼େ । ମନୋରମା ନାଁ ଟି ପୁରୁଣା କାଳିଆ ବୋଲି ସେ ମାଟ୍ରିକ ଫର୍ମ ପୂରଣ ବେଳେ ତା ନାଁକୁ ମନୋରମାରୁ ରେମା କରିଦେଇଥିଲା । ତା ପରଠୁଁ ଆମେ ତାକୁ ବିଗତ ଦିନର ହିନ୍ଦୀ ସିନେମା ଭିଲେନ ଅଜିତ ଷ୍ଟାଇଲରେ ରେମା ଡାର୍ଲିଙ୍ଗ ବୋଲି ଚିଡ଼ଉଥିଲୁ । ଆମେ ଷଷ୍ଠ ଶ୍ରେଣୀରୁ ଦଶମ ଯାଏଁ ଏକା ଇସ୍କୁଲରେ ପଢ଼ି ଭରି ସାଙ୍ଗ ହେଇଥିଲୁ । ଇସ୍କୁଲ ପରେ ଆମେ ଅଲଗା ଅଲଗା ଆଡ଼େ ପଢ଼ିଲେ ବି ଆମର ବନ୍ଧୁତ୍ୱ ବହୁ ବର୍ଷ ଯାଏ ଥିଲା । ହୁଏତ ଏବେ ବି ଅଛି, କିନ୍ତୁ ଯେଉଁ ଭବେ ଅଛି ତାକୁ ଠିକ୍ ଅଛି ବୋଲି କୁହାଯାଇପାରିବ କି ନା ସେ ନେଇ ମୁଁ ସନ୍ଦିହାନ । ଆମେ ମାନେ – ମୁଁ, ଲିପୁ, ମଧୁ ଆଉ ରେମା ।

ରେମା ଖାଲି ଆମ ବିଭଗ ନୁହେଁ ଆମ ଶ୍ରେଣୀରେ ଷାଣ୍ମାସିକ ଓ ବାର୍ଷିକ ପରୀକ୍ଷାରେ ପ୍ରଥମ ହେଉଥିଲା । ଆମ ଇସ୍କୁଲରେ ଗୋଟେ ଶ୍ରେଣୀରେ ସାତ ଆଠଟି ବିଭଗ ଥିବାରୁ କେବେ କେମିତି ଅନ୍ୟ ବିଭଗର ଛାତ୍ରଛାତ୍ରୀଙ୍କ ଭିତରୁ କେହି କେହି ପ୍ରଥମ ହେଉଥିଲେ । କିନ୍ତୁ ରେମା ପ୍ରଥମ ତିନି ଜଣଙ୍କ ମଧ୍ୟରେ ଅବଶ୍ୟ ରହୁଥିଲା । ସେଥିପାଇଁ ଆମେ ତାକୁ ନେଇ ଗର୍ବ କରୁଥିଲୁ । ତା ଭିତରେ ଥିବା ପ୍ରତିଯୋଗିତାଭବକୁ ଟେକୁଥିଲୁ, ଆମ ଭିତରେ ସେ ଭବକୁ ଖୋଜୁଥିଲୁ । ହେଲେ ଷଷ୍ଠ ଶ୍ରେଣୀରୁ ତାର ଗୋଟେ ଗୁଣ ଥିଲା । ପରୀକ୍ଷା ଖାତା ଦେଖାଯିବା ଦିନ ଯଦି ତାଠୁଁ କେହି କୌଣସି ବିଷୟରେ ଏକ ନମ୍ବର କି ପାଞ୍ଚ ଦଶମିକ ବେଶି ରଖିଥିବ ତାକୁ ସମ୍ଭାଳିବା ମୁଶ୍କିଲ । ସେ କେବଳ ପ୍ରଥମ ହେବନି, ତାର ସବୁ ବିଷୟରେ ମଧ୍ୟ ସମସ୍ତଙ୍କଠୁଁ ଅଧିକ ନମ୍ବର ରହିବା ଦରକାର । କେବେ କେବେ ମଧୁ ଗଣିତରେ ତା ସମାନ ନମ୍ବର ରଖିଦେଲେ ସେ ମଧୁ ଗଣିତ ପରୀକ୍ଷା ଖାତାକୁ ତନ୍ନତନ୍ନ କରି ଦେଖିବ କାଳେ ତାର ଗୋଟେ ଅଧେ ଅଧିକ ନମ୍ବର ପାଇବା ଅଯଥାର୍ଥ । ଆଉ ମୁଖ୍ୟ କଥା ହେଲା, ମୁଁ ତାଠୁଁ ସବୁବେଳେ ଚିତ୍ରାଙ୍କନରେ ପାଞ୍ଚ ଦଶ ନମ୍ବର ଅଧିକ ରଖୁଥିଲି । ଚିତ୍ରାଙ୍କନ ଖାତା ଦେଖା ଦିନ ସେ ତା ଖାତାକୁ ଦେଖିବ ଆଉ ମୋ ଖାତାକୁ ଦେଖିବ । ମୋ ଖାତା ଆଉ ତା ଖାତା ଧରି ତୁଳନା କରିବ – ଗୁରୁମାଙ୍କ ସହ ଯୁକ୍ତି କରିବ ତାର ଭୁଲ୍ କୋଉଠି, ତାକୁ କାହିଁକି କମ୍ ନମ୍ବର ମିଳିଲା ଇତ୍ୟାଦି ଇତ୍ୟାଦି । ମୋ ଚିତ୍ରକୁ ଦେଖି ପ୍ରତିଥର ସକସକ ହେଇ କାନ୍ଦିବ । ତାର କାନ୍ଦ ଦେଖି ମୋ ମନଟା ଦବିଯାଏ, ମୁଁ ମନେ ମନେ ଭବେ ଗୁରୁମା ତାକୁ ଅଧିକ ପାଞ୍ଚ ନମ୍ବର ଦେଇ ଦେଲେ କଅଁଣ ଅସୁବିଧା ହୁଅନ୍ତା ? ଯେ ଅଧିକ ନମ୍ବର କେତେଟା ପାଇ ମୋର କଅଁଣ ଲଭ ହେଉଛି, ମୋ ସାଙ୍ଗ ବିଚାରୀଟା ଏତେ କାନ୍ଦୁଛି !

ଥରେ ଆମ ଖେଳଛୁଟି ସମୟରେ ମୁଁ ବସିକି ଆମ ବିଦ୍ୟାଳୟ ବଗିଚ୍ଚର ଚିତ୍ର ଆଙ୍କୁଥିଲି । ରେମା ମୋ ପାଖରେ ବସି ଦେଖୁଥିଲା ।

"ତୁ ଆଙ୍କିଲେ ଫୁଲଗୁଡ଼ା କି ଜୀବନ୍ତ ଦେଖାଯାଉଛନ୍ତି ? ମୁଁ ଆଙ୍କିଲେ ସେମିତି ଦିଶୁନି ।" ରେମା ମୁହଁ ଶୁଖେଇ କହିଲା ।

"ନାଁ ମ, ତୁ ସେମିତି ଭାବୁଛୁ । ତୁ ବି ମନ ଦେଇ କଲେ ଆହୁରି ଭଲ ଚିତ୍ର କରିପାରିବୁ ।"

"ମୁଁ କଣ ଅଭ୍ୟାସ କରୁନି ? ପରୀକ୍ଷାରେ ଯାହା ପଡ଼ିବ ଅଭ୍ୟାସ କରୁଛି । ଚିତ୍ର ଆଙ୍କିବାରେ ବେଶି ସମୟ ଦେବା ସମ୍ଭବ ନୁହେଁ । ମୁଁ ତ ଜଏଣ୍ଟ୍ ଏଣ୍ଟ୍ରାନ୍ସ ଦେବି, କଂପୁଟର ବିଜ୍ଞାନୀ ହେବି । ସେଥିରେ ଏବେ ବହୁତ ସ୍କୋପ୍, ବହୁତ ଟଙ୍କା । "

ମୁଁ ଶୁଣି ବିସ୍ମିତ ହୁଏ ତାକୁ କେମିତି ତାର ଭବିଷ୍ୟତ ସ୍ପଷ୍ଟ ଦିଶୁଛି । ଆଉ ମୁଁ ଦୂରକୁ ଅନେଇଲେ ମୋତେ ଦିଗ୍‌ବଳୟ ଝାପ୍‌ସା ଦିଶୁଛି ।

"ମୋତେ ତ କେବଳ ଚିତ୍ର ଆଙ୍କିବାକୁ ଭଲ ଲାଗୁଛି ।" ମୁଁ କହିଲି ।

ରେମା ମୁହଁରେ ସ୍ମିତହସ ଫୁଟି ଉଠିଲା ।

ଗୋଟେ କଥା କିନ୍ତୁ ଆମେ ସମସ୍ତେ ମାନୁଥିଲୁ । ରେମା ଥିଲା ପ୍ରବଳ ପରିଶ୍ରମୀ ଓ ଶୃଙ୍ଖଳିତ; ରାତି ରାତି ଅନିଦ୍ରା ରହି ସେ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲା । ଯେକୌଣସି ପ୍ରତିଯୋଗିତାରେ ସବୁଠୁ ଆଗରେ ରହିବା ତାର ଗୋଟେ ପ୍ରକାର ଜିଦ୍ ଥିଲା ।

ଆମ ମାଧ୍ୟମିକ ପରୀକ୍ଷା ପରେ ପରେ ରେମା ବାପାଙ୍କର ଅସ୍ୱାଭାବିକ ମୃତ୍ୟୁ ହେଲା । ବାପଛେଉଣ୍ଡ ଆମ ସାଙ୍ଗ ପ୍ରତି ଆମର ସ୍ନେହ ଆଉ ସମବେଦନା ଆହୁରି ବଢ଼ିଗଲା । ଆମ ବୟସ ତା ବୟସ ସମାନ ହେଲେ ବି ଆମେ ତା ପ୍ରତି ଗୋଟେ ସୁରକ୍ଷା ଭାବ ରଖୁଥିଲୁ । ତାକୁ ମିତ୍ରସ୍ୟ ଚକ୍ଷୁସା ସମୀକ୍ଷା କରୁଥିଲୁ । ତା ଦୋଷ ମନରେ ଧରୁ ନଥିଲୁ, ତାର ପିଲାଳିଆମୀ ଯାଇନି ଭାବି ଆମେ ସେସବୁ ପ୍ରତି ଦୃଷ୍ଟି ଦେଉ ନଥିଲୁ । ସେତେବେଳେ ତାର ଯେତେ ଯୁଆଡ଼େ ଯିବାର ଥିବ କି କିଛି କାମ ଥିବ ସେ ଆମକୁ ନେଇକି ଯାଉଥିଲା । ଯୁକ୍ତଦୁଇ ବିଜ୍ଞାନ ପଢ଼ିବା ପରେ ସେ ଗୋଟେ ବେସରକାରୀ ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇଲା । ତାର ସବୁବେଳେ ଅଭିଯୋଗ ହେଲା ଯେ ଓଡ଼ିଶାର କୌଣସି ସରକାରୀ

ଇଞ୍ଜିନିୟରିଙ୍ଗ ମହାବିଦ୍ୟାଳୟରେ ତାକୁ ସୁଯୋଗ ମିଳିନାନି । ପରୀକ୍ଷା ଦିନ ସେ ନର୍ଭସ ହେଇଗଲା, ସେ ସବୁ ଜାଣିଥିଲା ହେଲେ ସିଲି ମିସ୍ଟେକ୍ କଲା – ଏ କଥା ସେ କମ୍ପୁଟର ବିଜ୍ଞାନ ପଢୁଥିବା ଚାରିବର୍ଷ ଯାକ କହିଲା । ଆମ ଇସ୍କୁଲର କିଛି ସହପାଠୀ ସରକାରୀ ଇଞ୍ଜିନିୟରିଙ୍ଗ କଲେଜରେ ପଢୁଥିଲେ । ରୋମାର ଆକ୍ରୋଶ ଥିଲା — "ସେ ଚାରିଜଣ କଅଣ ମୋଠୁଁ ବେଶି ଭଲ ପଢୁଥିଲେ ? ସେମାନେ ତ କେବେ ବି ମୋଠୁଁ ଅଧିକ ନମ୍ବର ରଖୁ ନଥିଲେ । ସେମାନେ କେମିତି ସରକାରୀ କଲେଜରେ ପାଇଲେ ?"

ଚାରିବର୍ଷ ପରେ ରୋମାର କାମ୍ପସ ଇଣ୍ଟରଭିଉରେ କୋଉ କମ୍ପାନୀରେ ହେଲାନି । ତାର କନ୍ଦାକଟାକୁ କିଏ ସମ୍ଭାଳେ ? ଆମେ ତିନି ସାଙ୍ଗ ତାକୁ ବୁଝାଇ ବୁଝାଇ ଥକିଲୁ । ତା କାନ୍ଦ ଯାଇ ବନ୍ଦ ହେଲା ଯେତେବେଳେ ଏମ୍ ଟେକ୍ ପଢ଼ିବାକୁ ସେ ଗୋଟେ ଆମେରିକୀୟ ବିଶ୍ୱବିଦ୍ୟାଳୟରୁ ଡ଼କରା ପାଇଲା । ସେ ଆମେରିକାରେ ଯାଇ ଚଳିପାରିବ କି ନାହିଁ, ତା ଇଂରାଜୀ ଶୁଣିକି ସେଠିକା ଲୋକେ ଯଦି ହସିବେ ସେ କଅଣ କରିବ, ତାକୁ ଆମ ଭଳିଆ ସାଙ୍ଗ ମିଳିବେ କି ନାହିଁ ପରି ଚିନ୍ତା ପ୍ରକଟ କଲା । ଆମେ ତାକୁ ଭରସା ଦେଲୁ ସେଠି ସେ ସମସ୍ତଙ୍କଠୁଁ ଭଲ କରିବ । ଆମ ସାଙ୍ଗରେ ଯାଇ ତା ପାସପୋର୍ଟ କରେଇଲା । ତାର ବିଦେଶକୁ ଯିବା ଦିନ ପାଖେଇ ଆସିଲା । ଯିବା ତିନି ଦିନ ଆଗରୁ ବିଉଟି ପାର୍ଲରରେ ଯାଇ ଆକର୍ଷଣୀୟ ହେବାର ଇଚ୍ଛା ପ୍ରକଟ କଲା । ଲିପୁର ବଡ଼ ଭଉଣୀ ବିଉଟି ପାର୍ଲରକୁ ଯାଇ ମାଗଣାରେ ବାଳକଟା, ମୁହଁସଫା କାମ ସାରିଲା । ଯିବା ଦିନ ଆମେ ତାକୁ ଭୁବନେଶ୍ୱର ବିମାନ ବନ୍ଦରରେ ବିଦାୟ ଦେଇ ଆମ ସାଙ୍ଗ ଯେ ଗୋଟେ ବଡ଼ ସଫଳତା ପାଇଲା ଭାବି ବାପଛେଉଣ୍ଡ ଝିଅଟାକୁ ଈଶ୍ୱର ସହାୟ ହୁଅନ୍ତୁ ବୋଲି ପ୍ରାର୍ଥନା କରି ନିଜ ନିଜର କଲିଜାରେ ସାଙ୍ଗ ଛାଡ଼ି ଯିବାର ବେଦନା ଅନୁଭବ କଲୁ । ସେ ଉଡ଼ାଜାହାଜରେ ଗଲା; ଆମକୁ ତା ଛତାଜୋତା କାର୍ଗୋ କରିବାକୁ କହିଯାଇଥିଲା । ଆମେ ଆମ ପକେଟରୁ ଖର୍ଚ୍ଚ କରି ତା ପାଖକୁ ଦିଟା ବଡ଼ ବଡ଼ ଟ୍ରଙ୍କ ଜାହାଜରେ ପଠାଇବା ବ୍ୟବସ୍ଥା କଲୁ ।

ଆଉ ତାପରେ...

ଆଉ ତାପରେ ରୋମା ଆମ ସହ କୌଣସି ସଂପର୍କ ରଖିଲାନି । ନାଁ ଥରେ ଫୋନ କଲା ନାଁ ଖଣ୍ଡେ ଇମେଲ ପଠେଇଲା । ଆମକୁ ସାଂଘାତିକ ଖରାପ ଲାଗିଲା । ଲିପୁ ସବୁଠୁଁ ବେଶି ପ୍ରତିକ୍ରିୟାଶୀଳ ହେଲା ।

"ବହୁତ ଫୁଟାଣି ହେଇଗଲାଣି, ବିଦେଶରେ ପଢ଼ିଲା ତ!" ଲିପୁ ବିରକ୍ତ ହେଇ କହିଲା, "ବାଟରେ ଦେଖିଲେ ଯଦି ମୁଁ ଆଉ ତାକୁ ଚିହ୍ନିବି!"

"ସେ ଆରମ୍ଭରୁ ସେଯ଼ା ଥିଲା; ଆମେ ହିଁ ତାକୁ ପ୍ରଶୟ ଦେଲେ।" ମଧୁ କହିଲା।

ମଧୁ ବି ଆଉ ଦି ବର୍ଷ ପରେ ଗଣିତରେ ଉଚ୍ଚତର ଗବେଷଣା ପାଇଁ ଜର୍ମାନୀ ଗଲା। ଲିପୁ ବଡ଼ଭାଇ ଆମେରିକାରେ ବହୁତ ବର୍ଷ ଆଗରୁ ଥିଲେ। ଲିପୁ କମ୍ପ୍ୟୁଟର କୋର୍ସ କରି କୋଉ ସଂସ୍ଥା ମାଧ୍ୟମରେ ଆମେରିକା ଗଲା। ଆଉ ସବୁଜ କାର୍ଡ଼ କରି ସେଠି ଗୋଟେ ବିହାରୀ ଝିଅକୁ ବାହା ହେଇ ରହିଗଲା।

ରେମା ଆମେରିକା ଯିବାର ଚାରି ପାଞ୍ଚ ବର୍ଷ ବିତିଯାଇଥିଲା। ମଝିରେ ମଝିରେ ଆମେ ତା ବିଷୟରେ ଖବର ପାଉଥିଲୁ ଯେ ସେ ଗୋଟେ ପ୍ରସିଦ୍ଧ ବହୁରାଷ୍ଟ୍ରୀୟ କମ୍ପାନୀରେ କାମ କରୁଥିଲା, ତାକୁ ନିୟମିତ ପଦୋନ୍ନତି ମିଳୁଥିଲା। ଥରେ ଲିପୁ ସହ ତାର ଜଣେ ସହକର୍ମୀର ଗୋଟେ ପାର୍ଟିରେ ପରିଚୟ ହେଲା। ଲିପୁ ପଚାରିଲା, "ତୁମେ ରେମାକୁ ଜାଣିଛ? ସେ ଆମ ସହ ପଢୁଥିଲା।"

"ଓଃ, ଆପଣ ରେମାର ସାଙ୍ଗ! ଗ୍ରେଟ୍!" ସେ ଏମିତି କଟାକ୍ଷ କରି ଉତ୍ତର ଦେଲା ଯେ ଲିପୁ ଆଉ କିଛି ପଚାରିଲାନି।

ଏମିତି ଦିନ ଗଡ଼ିଗଲା। ହଠାତ୍ ଦିନେ ରେମା ଆମ ଘରକୁ ଆସି ମୋତେ ଚକିତ କରି ତା ବାହାଘର ନିମନ୍ତ୍ରଣ ପତ୍ର ଖଣ୍ଡିଏ ମୋ ହାତରେ ଧରାଇ "କାଲି ମୋ ବାହାଘର, ଆସିବୁ" କହି ତରତର ହେଇ ପଳେଇଲା।

ସେଦିନ ଲିପୁ ଓ ମଧୁ ସହ ଗ୍ରୁପ୍ କଲରେ ମୁଁ ଯେ଼ ଖବର ଦେବାରୁ ଲିପୁ ମୋ ଉପରେ ବର୍ଷିଲା – "ତାକୁ ଶୋଧିଲୁନି, ତା ନିମନ୍ତ୍ରଣ ପତ୍ର ରଖିଲୁ? ଯଦି ତା ବାହାଘରକୁ ଯିବୁ, ମୋତେ ଚିହ୍ନିବୁ। ମୁଁ ତ ଠିକ୍ କରିଛି ତାକୁ ବାଟଘାଟରେ ଦେଖିଲେ ଚିହ୍ନିବିନି।"

"ମୁଁ ଭାବୁଥିଲି ତା ବରକୁ ଟିକେ ଦେଖି ଆସିଥାନ୍ତି। ହାୟ, ହାୟ! କାହା କପାଳରେ ପେଚା ବସିଲା କେଜାଣି?" ମୁଁ ଲିପୁର ରାଗ ଶାନ୍ତ କରିବାକୁ କହିଲି।

"ବରକୁ ଦେଖିବାକୁ ମନ ତୋର? ତା ପରେ ଚାରି ଟ୍ରଙ୍କ ଜିନିଷ ଆମେରିକା ପଠେଇବାକୁ କହିବ, ପଠେଇବୁ ତ?"

"ଓଃ, ମୁଁ ତ ଏକଥା ଭାବି ନଥିଲି। ମାନେ ଦଶ କୋଡ଼ିଏ ହଜାର ଟଙ୍କାର ଚୂନ!"

"ଭାବି ନଥିଲୁ ତ ଟିକେ ଭାବେ," ମଧୁ କହିଲା, "ଏ ଯୁଗରେ ଏତେ ଓଲୁ ହେଲେ ଚଳିବ ? ଏତେ ବର୍ଷ ପରେ ତାର କିଛି କାମ ନାହିଁ, ତୋତେ ଦେଖିବାକୁ ତା ପ୍ରାଣ କାନ୍ଦିଲା, ସେଥିପାଇଁ ମଙ୍ଗଳପାଗରେ ତୋତେ ଡ଼ାକିବାକୁ ଦୌଡ଼ି ଆସିଲା ? ହୁଃ! ସେ କାହାକୁ ବାହାହେଲା ଆମେ ବଳେ ଜାଣିବାନି; ଖବରଟା କଅଣ ଲୁଚି ରହିବ ?"

ମଧୁ ଓ ଲିପୁ ମୋ ବ୍ରେନଓ୍ୱାଶ୍ କରିଦେଲେ, ମୋ ଚୁଙ୍ଗୁଚୁଙ୍ଗୁ ମନ ସ୍ଥିର ହେଇଗଲା – ରେମା ଡାର୍ଲିଙ୍ଗ କାହାର ମନୋରମା ହେଲା ଜାଣିବାର କୌତୂହଳ ଦବିଗଲା । ତଥାପି ମୁଁ ପଚାରିଲି — "ଆଚ୍ଛା, ରେମାର ଲଭ୍ ମ୍ୟାରେଜ ନା ଆରେଞ୍ଜୋଡ୍ ମ୍ୟାରେଜ କେଜାଣି ?"

"ରେମା ପୁଣି କରିବ ଲଅଅଅଅଭ୍? ତା ଦ୍ୱାରା ଖାଲି ସମ୍ଭବ ନଅଅଅଅଭ୍!" ଲିପୁ ତାଚ୍ଛଲ୍ୟ କରି କହିଲା ।

"ଆରେ ନଅଅଅଅଭ୍ କଅଣ ?" ମଧୁ ଖିଲିଖିଲି ହସି ପଚାରିଲା ।

"ଶୁଦ୍ଧ ଓଡ଼ିଆରେ କହିଲେ ପ୍ରେମ ନୁହେଁ ଫ୍ରେମ । ବୁଝିଲୁ ?"

ସେଦିନ ଲିପୁ ପ୍ରସ୍ତାବ ଦେଲା, "ଛାଡ଼ ସେକଥା । ତା ପ୍ରେମ ଫ୍ରେମରୁ ଆମକୁ କଅଣ ମିଳୁଛି ? ଆଜିଠୁଁ ରେମା ବିଷୟରେ ଆଦୌ କଥା ହେବାନି । ତା ଆଲୋଚନା ପୂରା ବନ୍ଦ । ତା କଥା ପଡ଼ିଲେ ମୋ ବ୍ରହ୍ମ ତାତୁଛି ।"

"ହଁ, ଆମ ମୁଣ୍ଡ ଏତେ ବର୍ଷ ଖାଇଲା, ଏବେ ଖାଉ ତା ବର ମୁଣ୍ଡ ।" ମଧୁ କହିଲା ।

"ଠିକ୍ ଠିକ୍, ଖାଉ ତା ବର ମୁଣ୍ଡ ।" ମୁଁ ଏକମତ ହେଲି । ଏହିପରି ଭାବେ ତା ବରଟି ପାଇଁ ଶୁଭ ମନାସି ଆମେ ରେମା ଫାଇଲ କ୍ଲୋଜ୍ କରିବାକୁ ନିଷ୍ପତ୍ତି ନେଲୁ ।

ଯା ଭିତରେ ବର୍ଷେ ଉପରେ ବିତିଯାଇଥିବ । ଭୁବନେଶ୍ୱରରେ ଏପ୍ରିଲ ମାସ, କିନ୍ତୁ କାଳ ବୈଶାଖୀ ଯୋଗୁଁ ପାଗ ଥଣ୍ଡା ଥାଏ । ଖରାବେଳେ ମୋର ମୁଣ୍ଡଟା ବିନ୍ଧି ଫାଟିଯାଉଥିବା ଅବସ୍ଥାରେ ଔଷଧ କିଣିବାକୁ ମୁଁ ଆମ ଘରୁ ନାଲକୋ ଛକ ପାଖ ଗୋଟେ ଦୋକାନକୁ ଗଲି । ସେଠୁ ମୁଁ ନିୟମିତ ଖାଉଥିବା ମୁଣ୍ଡବିନ୍ଧା ପ୍ରତିରୋଧକ ଔଷଧ କିଣି ଜରୁରୀ ପରିସ୍ଥିତିରେ ନିଆଯାଉଥିବା ଗୋଟେ ବଟିକା ପାଣି ଗ୍ଲାସେ ମାଗି ଢୋକି ଦେଲି । ଘରେ ଯାଇ କେମିତି ବିଛଣାରେ ପଡ଼ିଗଲେ

ଔଷଧ ପ୍ରଭାବରେ ଦି ତିନି ଘଣ୍ଟା ଶୋଇପଡ଼ି ଉଠିଲା ବେଳକୁ ଯେ ପ୍ରାଣଘାତକ ମୁଣ୍ଡବିନ୍ଧା ନ ଥିବ ଭାବି ଦଶ ମିନିଟର ଚଲାବାଟକୁ ନ ଗ୍ଲିପାରିବା ଅବସ୍ଥାରେ ଠିଆ ହେଇଛି, ଟିକେ ଦୂରରୁ ଗୋଟେ ଅଟୋରିକ୍ସା ଆସିବାର ଦେଖିଲି । ମୁଁ ହାତ ଦେଖାଇବାକୁ ଗଲାରୁ ମୋ ଆଖି ଅଟୋରେ ବସିଥିବା ରେମା ଉପରେ ପଡ଼ିଲା । ଯେଉଁ ସରଭାଇଭାଲ ଇନଷ୍ଟିଙ୍କ୍ଟ ଅର୍ଥାତ୍ ନିଜକୁ ବଞ୍ଚାଇବାର ପ୍ରବୃତ୍ତି ପ୍ରାଣୀଜଗତର ସମସ୍ତଙ୍କ ମଧ୍ୟରେ ଅନ୍ତର୍ନିହିତ ତାରି ପ୍ରଭାବରେ ବୋଧେ ମୋର ଦୁଇ ହାତ ଗୌରାଙ୍ଗ ଚୈତନ୍ୟଙ୍କ ଭଳି ସାଏଁ କିନା ଉପରକୁ ଉଠିଗଲା । ତଥାପି ଅଟୋରିକ୍ସାଟି ଅଟକିଲା ଆଉ ତା ଭିତରୁ ରେମା ବାହାରି ଆସିଲା ।

ସେତେବେଳକୁ ଔଷଧ ପ୍ରଭାବରେ ମୋତେ ଟିକେ ଟଳମଳ ଲାଗିବା ଆରମ୍ଭ ହେଲାଣି । ରେମା ମୋ କାନ୍ଧରେ ହାତ ପକେଇ କୋଟିନିଧି ପାଇଲା ଭଳି ସ୍ୱରରେ ପଗ୍ଭରିଲା – "କେତେ ଦିନ ପରେ ଦେଖାହଉଛି! କେମିତି ଅଛୁ ?"

ମୋ ମୁଣ୍ଡ ଭିତରେ ଶିରଗୁଡ଼ା ଜୋର୍ ଜୋର୍ ଟାଣି ହେଇଗଲା, ସତେ ବଢ଼େଇଟେ ହାତୁଡ଼ିରେ ମୋ ମୁଣ୍ଡ ଭିତରେ କଣ୍ଟାଟେ ପିଟିଦେଲା । ମୋ ପାଟିରୁ କେମିତି କେଜାଣି ବାହାରିଲା, "ମୁଁ ଜାଣିପାରିଲିନି ଆପଣଙ୍କୁ..."

ରେମା ଆଖିରୁ କଳା ଚଷମାକୁ ମଥା ଉପରକୁ କରି ତା ମୁହଁ ଆଡ଼କୁ ପାଞ୍ଚ ଆଙ୍ଗୁଳି ଦେଖେଇ ମୋତେ କହିଲା – "ଜାଣିପାରୁନୁ ? ଆରେ ଦେଖେ, ମୁଁ ରେମା । ତୋ ସାଙ୍ଗ ।"

"ମୋର କାଇଁ ମନେପଡୁନି... ?" ମୁଁ ଆଉ ତା ଆଡ଼କୁ ନ ଅନେଇ ଅନ୍ୟ ଗୋଟେ ଅଟୋରିକ୍ସା ଅଟକାଇବାକୁ ହାତ ଦେଖାଇଲି । ଅଟୋ ଅଟକିଲାରୁ ମୁଁ ଚଞ୍ଚଳ ଯାଇ ସେଥିରେ ବସି ପଡ଼ିଲି ।

ସେଦିନ ଘରେ ମୋ ନିଦ ଭାଙ୍ଗିଲା ବେଳକୁ ସନ୍ଧ୍ୟା ସନ୍ଧ୍ୟା । ମୋ ପାଇଁ ବୋଉ ଆଣି ଗ୍ଭହା କପେ ଥୋଇଲା । ଯଦିଓ ଔଷଧ ପ୍ରଭାବରେ ମୋତେ ପ୍ରାୟ ଛତିଶ ଘଣ୍ଟା ପାଖାପାଖି ମାନ୍ଦା ଲାଗେ, କଥା ହେବାକୁ କି କିଛି କରିବାକୁ ମନ ହୁଏନି, ସେଦିନ ମୁଁ ଅବିଳମ୍ବେ ମଧୁ ଆଉ ଲିପୁକୁ ଗ୍ରୁପ୍ କଲ୍ କଲି । ମଧୁ ସେତେବେଳକୁ ଇନ୍ଦୋରରେ ଗୋଟେ ଜାତୀୟ ସଂସ୍ଥାନରେ ଅଧ୍ୟାପନା କରୁଥିଲା; ଲିପୁକୁ ଅସମୟରେ ଉଠାଇଲାରୁ ସେ ଅଧା ନିଦରେ ବିବ୍ରତ ହେଇ ପଗ୍ଭରିଲା – "କଁ ହେଲା ?"

ମୁଁ କିଛି ଘଣ୍ଟା ତଳେ ଯାହା ଘଟିଯାଇଥିଲା ସେ ଦୃଶ୍ୟକୁ ଯେତେ ନିଖୁଣ

ଭାବେ ବର୍ଣ୍ଣନା କରିହେବ କରୁ କରୁ ହସି ହସି ଗଡ଼ିଲି । ଲିପୁ ଆଉ ମଧୁ ମୋତେ ସାବାସି ଦେଇ ହସି ହସି ବେଦମ୍ ହେଲେ । ଲିପୁ କହିଲା – "ରେମା ଷ୍ଟୋରୀର ଉପଯୁକ୍ତ ପରିସମାପ୍ତି ହେଲା । ତାକୁ ଏୟା ଦରକାର ଥିଲା । କିନ୍ତୁ ଏଥିରେ କ୍ରେଡିଟ୍ କାହାର? ମୁଁ ସବୁବେଳେ କହୁଥିଲି ବୋଲି ନା, ନ ହେଲେ ତୋ ମୁଣ୍ଡକୁ ବୁଦ୍ଧି ଜୁଟିଥାନ୍ତା?"

"ଠିକ୍ ଠିକ୍, ନ ହେଲେ ସେ ଅବସ୍ଥାରେ ରେମା ସହ କଥା ହେଇଥିଲେ... ରାସ୍ତା ସେପଟେ କଳିଙ୍ଗ ହସପିଟାଲ, ଟେକା ହେଇ ଯାଇଥାନ୍ତି! ବଞ୍ଚିଗଲି ।"

"କଅଣ କହିଲା, କଅଣ କହିଲା – ମୋତେ ଦେଖେ, ମୋତେ ଦେଖେ, ମୁଁ ତୋ ସାଙ୍ଗ ରେମା!" ମଧୁ କହି କହି ହସିଲା ।

ହୋ ହୋ ହସି ହସି ଆମ ପେଟ ବଥା । ମୋ ବୋଉ ଖାଲି ମୁଣ୍ଡ ହଲେଇ ମୁଁ ଠିକ୍ କାମ କରିନି ବୋଲି ଜଣେଇଦେଲା ।

କିଛି ମାସ ବିତିଗଲା । ମୁଁ କାମ ସଂକ୍ରାନ୍ତରେ କଲିକତାରେ ଡ଼େରା ପକେଇଥିଲି । ଯା ଭିତରେ ଆମେ ତିନି ସାଙ୍ଗ ରେମା କଥା ପକେଇ ଯେତେବେଳେ ମନ ସେତେବେଳେ ହସୁଥିଲୁ । ଦିନେ ସନ୍ଧ୍ୟାବେଳେ ବୋଉ ଫୋନରେ ଖବର ଦେଲା – "ଆଜି ଆମ ଘରକୁ ରେମା ଆସିଥିଲା ।"

"କଅଁଣ, ରେମା ଆସିଥିଲା?" ମୁଁ ଆଶ୍ଚର୍ଯ୍ୟ ହେଇ ପଚାରିଲି ।

"ହଁ । ଆମ ଦ୍ୱାର ଘଣ୍ଟି ବାଜିଲା, ମୁଁ ଯାଇ ଦେଖିଲାରୁ ରେମା ।

ସେ କହିଲା – ମାଉସୀ ନମସ୍କାର । ମୋତେ ଚିହ୍ନି ପାରୁଛନ୍ତି? ମୁଁ ରେମା ।

ମୁଁ ହଁ କହି ଦ୍ୱାର ଖୋଲିଲି । ସେ ଘଣ୍ଟେ ଖଣ୍ଡେ ବସିଲା ।

ମୋତେ କହିଲା – ମାଉସୀ ଆପଣ ମୋତେ ଚିହ୍ନିପାରିଲେ, ହେଲେ ଯିଏ ମୋର ଏତେ ବର୍ଷର ସାଙ୍ଗ, ସିଏ ମୋତେ ଚିହ୍ନି ପାରିଲାନି? ଆପଣ କହିଲେ ଏଇଟା କଅଣ ସମ୍ଭବ?"

"ସେଇଠୁ ତୁ କଅଁଣ କହିଲୁ?" ମୁଁ ବୋଉକୁ ପଚାରିଲି ।

"କହିଲି ସେ ତ ବେଳେ ବେଳେ ଭୁଲିଯାଏ । ମୁଣ୍ଡବିନ୍ଧା ବେମାରିଟା ତ ତାକୁ ଖାଇଲା ।"

"ସେଇଠୁ?"

"ଗ୍ରେମା କହିଲା – ମୁଁ କଅଣ ଜାଣିନି ତାର ଭୁଲାମନ? ଥରେ ମୋତେ ପଛରେ ବସେଇ ପେଡେଲ୍ ମାରିବାକୁ ଭୁଲିଗଲାରୁ ଆମେ ସାଇକେଲରୁ ପଡ଼ିଯାଇଥିଲୁ । ସେଦିନ ଔଷଧ ଦୋକାନ ଆଗରେ ଠିଆ ହେଇଥିଲା, କେମିତି ଦିଶୁଥିଲା । ସେଥିପାଇଁ ତ ମୁଁ ତାକୁ ମନେ ପକେଇଦେଲି । ତଥାପି ସେ ମୋତେ ଚିହ୍ନିଲାନି । ମାଉସୀ, ସେ ଜାଣିଜାଣିକି କାହିଁକି ଏମିତି କଲା? ମୁଁ ତାକୁ କେତେ ଭଲପାଏ, ଅଥଚ ସେ ମୋ ସହ ଏମିତି ବ୍ୟବହାର କଲା । ମୋତେ ଚିହ୍ନିଲାନି!"

"ସେଇଠୁ ତୁ କଅଁଣ କହିଲୁ?"

"କଅଁଣ ଆଉ କହିଥାନ୍ତି? ଗ୍ଲହା ପିଇବ କି ପଗ୍ଲରିଲି । ସେ କଫି ଯଦି ଅଛି ପିଇବ ବୋଲି କହିଲା । ମୁଁ କଫି କରିକି ଦେଲି ।"

"ଆଉ କଅଁଣ କହୁଥିଲା?"

"ପଗ୍ଲରୁଥିଲା ତୁ କଅଁଣ କରୁଛୁ, ବାହା ହେଲୁଣି କି ନାହିଁ," ବୋଉର ସ୍ୱର ସେ ମୁହଁ ଫୁଲେଇ କଥା ହେଲେ ଯେମିତି ଶୁଣାଯାଏ ସେମିତି ଶୁଭିଲା ।

"ତୋ ପେଟରେ ତ କିଛି ରହିନଥିବ?" ମୁଁ ବ୍ୟଙ୍ଗୋକ୍ତି କଲି ।

ବୋଉ ଟିକେ ସମୟ ଚୁପ୍ ରହିଲା ।

"ତୋ ଫୋନ ନମ୍ବର ଆଉ ଠିକଣା ପଗ୍ଲରୁଥିଲା । ମୋର ମନେ ନାହିଁ ବୋଲି କହିଲାରୁ ବାପାଙ୍କୁ ଦେଖାକରି ତାଙ୍କଠୁଁ ନେଲା ।"

"ଓହଃଃଃଃଃ ଗଅଅଅଡ୍! ତାକୁ ମୋ ନମ୍ବର ଆଉ ଠିକଣା ଦେବା କଅଁଣ ଦରକାର ଥିଲା?"

"ସେଠୁ କଅଁଣ ହେଲା? ତୋର ଯଦି କଥା ହେବାକୁ ଇଚ୍ଛା ହେବନି, ତୁ ଫୋନ କାଟିଦେବୁ ।" ବୋଉ ଆଦୌ ବିବ୍ରତ ନ ହେଇ କହିଲା, "ସେ ତ ଆମେରିକାରେ ରହୁଛି । ସେ କଅଁଣ ତୋତେ ଭେଟିବାକୁ ଯିବ ନା କଅଁଣ? ସେ କୋଉଠୁ ଏତେ ସମୟ ପାଇବ?"

"ସିଏ ଯୋଉଠି ରହୁ ତାକୁ ସବୁ ଜଣେଇବା କଅଁଣ ଦରକାର ଥିଲା?"

"ସେ ବାହାସାହା ହେଇ ଘରସଂସାର କରିଛି । ତୋ ଭଳି ହେଇଛି?" ବୋଉ କହିଲା, "ତୁ କାହିଁକି ବାହା ହେଇନୁ ବୋଲି ପଗ୍ଲରିଲା । ମୁଁ କହିଲି – ଆମ କଥା ତ ଶୁଣୁନି । କଅଁଣ କରିବୁ? ସେ ତୋତେ ବୁଝେଇବ କହିଛି ।"

"ତୋର କିଛି କାମଧନ୍ଦା ନାହିଁ । ସେ ମାଙ୍କିଡ଼ି ରେମା ତୋତେ କିମିଆ କଲା? ଶେଷରେ ତା କାନ୍ଧରେ ମୁଣ୍ଡ ରଖିକି କାନ୍ଦିଲୁ?" ମୁଁ ବୋଉକୁ ଚିଡ଼ିକି କହିଲି ।

"ଆମର ଆଉ କି କାମଧନ୍ଦା?" ବୋଉ ସ୍ୱରକୁ ଟାଣ କରି ଉତ୍ତର ଦେଲା, "ବୁଢ଼ାବୁଢ଼ୀ ହେଲୁ । ତୁ ହାତକୁ ଦିହାତ ହେଲେ ଆମେ ଟିକେ ରାମେଶ୍ୱରମ୍ ତୀର୍ଥରେ ଯାଆନ୍ତୁ ।"

"ମୁଁ ଆଜି ଟିକଟ କାଟି ଦଉଛି, ତୁମେ ଦିଜଣ ତୀର୍ଥରେ ଯାଅ । ମୋ ମୁଣ୍ଡ ଖରାପ କରନା ।"

"ମୁଣ୍ଡ ତ ଆମର ଖରାପ ତୁ ବାହା ନ ହେଇ ବସିଛୁ । ଯାକୁ ପଦେ ଭଲ କଥା କହିଲେ ଯା ମୁଣ୍ଡ ଖରାପ ହେଇଯାଉଛି! ଏବେ ବାପାବୋଉ ଅଛନ୍ତି, ବୟସ ଅଛି, ତୋତେ ଜଣାପଡୁନି । ବୟସ ଗଲେ ତୋ ଦେହମୁଣ୍ଡକୁ କିଏ ଜଗିବ?" ବୋଉ କି ସହଜେ ଛାଡ଼ିବ!

"ଆଜିକାଲି ତୋ ସହ କଥା ହେବା ମୁଶ୍କିଲ!" ଯା କହି ମୁଁ ଫୋନ ରଖିଲି ।

ଜୀବନରେ ଏମିତି ସମୟ ଆସେ ଯେତେବେଳେ ମଣିଷକୁ ତାର ବାପାବୋଉ ବି ବୁଝନ୍ତନି । କି ବିଡ଼ମ୍ୱନା!

ଲିପୁ ଆଉ ମଧୁ ସହ କଥା ହେଲାରୁ ଜଣାପଡ଼ିଲା ରେମା କେବଳ ଆମ ଘରକୁ ଯାଇ ନଥିଲା, ସେ ଲିପୁ ଓ ମଧୁ ଘରକୁ ମଧ ଯାଇଥିଲା । ସେ ଦୁଇଜଣଙ୍କ ବାପାମାଆଙ୍କୁ ସେଇ ସମାନ କଥା କହିଥିଲା – ଆପଣ ମୋତେ ଚିହ୍ନିପାରିଲେ ଅଥଚ ଯିଏ ମୋର ଏତେ ବର୍ଷର ସାଙ୍ଗ ସେ ମୋତେ ଚିହ୍ନିପାରିଲାନି! ତା ଛଡ଼ା ଲିପୁ ଓ ମଧୁ କଅଣ କରୁଛନ୍ତି, କଉଠି ରହୁଛନ୍ତି, କେତେ ଟଙ୍କା ଦରମା ପାଉଛନ୍ତି, ବାହା ହେଲେଣି କି ନାହିଁ, କାହାକୁ ବାହା ହେଲେ, ଲିପୁର ସ୍ତ୍ରୀ କେମିତି ଦେଖିବାକୁ, ମଧୁର ସ୍ୱାମୀ କଅଣ କରୁଛି, ସେମାନେ ନିଜର ଘର କିଣିଲେଣି କି ନାହିଁ, କୋଉ ଗାଡ଼ି ଚଲଉଛନ୍ତି ଇତ୍ୟାଦି ସବୁ ଟିକିନିଖି ବୁଝିଥିଲା । ହଁ, ସେ ଯେ ଖବର ବି ଦେଇଥିଲା ଯେ ସେ ଆମେରିକାରେ ଗୋଟେ ଡୁପ୍ଲେକ୍ସ ଘର କିଣିଛି, ତା ସ୍ୱାମୀ ଆଉ ସେ ଦିଟା ଅଲଗା ଅଲଗା ପୋର୍ସେ କାର୍ ଚଲେଇ ଅଫିସ ଯାଆନ୍ତି, ସେ ଭୁବନେଶ୍ୱରରେ ଚନ୍ଦକା ପଟେ ଦି ଏକର ଜାଗା ପକେଇଛି, ପଟିଆରେ କୋଉଠି ଥ୍ରୀ ବି-ଏଚ୍-କେ ଫ୍ଲାଟ୍ କିଣିଛି । ବିଶେଷ କଥା ହେଲା ସେ ମଧୁର ମାଆଙ୍କୁ ପଚାରିଲା – "ମଧୁ ତ ଏତେ ଭଲ ପଢୁନଥିଲା । ସେ କେମିତି ବିଦେଶରେ ଗବେଷଣା କରିବାକୁ ସୁଯୋଗ ପାଇଲା?"

ମଧୁ ହସି ହସି କହିଲା, "ରେମା ଡାର୍ଲିଙ୍ଗ ଡାଟା କଲେକ୍ସନ କରିବାକୁ ଆସିଥିଲା!"

"ମୁଁ ଯାହା ଶୁଣୁଛି ବଡ଼ବଡ଼ିଆଙ୍କ ସହ ତାର ବଢ଼ିଆ ସେଟିଙ୍ଗ । ଭଲରେ ତ ଅଛି । କାହିଁକି ଏମିତି ହଉଛି କେଜାଣି?" ଲିପୁ କହିଲା ।

ଆମେ ରେମା ଷ୍ଟୋରୀର ପରିସମାପ୍ତି ଘଟିଲା ବୋଲି ଯାହା ଭାବିଥିଲୁ ତା ତ ଘଟିଲାନି । ତଥାପି ଆମେ ତାର ଏମିତି ସମସ୍ତଙ୍କ ଘରକୁ ଯିବାଟାକୁ ଗୋଟେ ବ୍ୟତିକ୍ରମ ଭାବିଲୁ । ସେ କାହିଁକି ଆମ ସହ ଯୋଗାଯୋଗ ରଖିବାକୁ ଚାହିଁବ ତାର କିଛି କାରଣ ଖୋଜି ପାଇଲୁନି । କାମର ଚାପ ବି ବଢ଼ିଯାଇଥିଲା । ଆମେ ତିନିଜଣ ମାସକୁ ଥରେ କି ଦିଥର କଥା ହେଲେ ହେଉଥିଲୁ । ସେମିତି ରାତିଦିନ କାମ କରି ଦିନେ ମୁଁ  କଳାକାରଙ୍କ ପାଇଁ ଉର୍ଦ୍ଦିଷ୍ଟ ଗୋଟେ ଷ୍ଟୁଡିଓରେ ଖରାବେଳ ଖାଇବା ପରେ ଶୋଇଛି ମୋ କବାଟ ଠକ୍ ଠକ୍ ହେଲା । ମୁଁ ଏକବସ୍ତ୍ରରେ କବାଟ ଖୋଲି ପାଟି ଆଁ କରି ଠିଆ ହୋଇ ରହିଲି । ମୋ ସାମ୍ନାରେ ରେମା ଠିଆ ହେଇଥିଲା, ତା ସାଙ୍ଗରେ ଆଉ ଜଣେ ବିଶେଷ ବ୍ୟକ୍ତି ଥିଲେ ।

ମୁଁ କଅଣ କହିବା ଆଗରୁ ରେମା କହିଲା, "ମୋତେ ଚିହ୍ନିବା ଦରକାର ନାହିଁ । ୟାଙ୍କୁ ଚିହ୍ନେ, ମୋ ବେଟର ହାଲ୍ଫ, ଅଶୋକ ।"

ଅଶୋକ ମୋ ସହ ହାତ ମିଳେଇବାକୁ ହାତ ବଢ଼େଇଲେ । ମୁଁ ହାତ ବଢ଼େଇ ଭିତରକୁ ଆସିବାକୁ ଇଶାରା କଲି । ରେମା ଆଉ ଅଶୋକ ଷ୍ଟୁଡିଓ ଭିତରକୁ ଆସିଲେ ।

ଗୋଟେ ଅଣଓସାରିଆ ଖଟକୁ ଛାଡ଼ିଦେଲେ ଷ୍ଟୁଡିଓ ସାରା କାଗଜ, କାନଭାସ, ରଙ୍ଗ, ତୂଳୀ, ପେନସିଲ ଏଣେ ତେଣେ ହେଇ ପଡ଼ିଥିଲା । ଗୋଟେ କୋଣରେ ମୋ ସଫା ମଇଳା ଲୁଗାପଟା ଜମା ହେଇଥିଲା । ବସିବାକୁ ଗୋଟେ ମାତ୍ର ଚୌକି ଥିଲା ।

"ସୋ ଦିସ୍ ଇଜ୍ ଦେନ୍ ଦି ଲାୟନ୍ସ ଡେନ୍," ରେମା ମୋର ଛୋଟ କୋଠରିଟିରେ ଆଖି ବୁଲାଇଲା, ଦାନ୍ତ ଦେଖେଇ ମୋ ହାତକୁ ମୋ ପ୍ରିୟ ବିଦେଶୀ ପାନୀୟ ବୋତଲ ଗୋଟେ ବଢ଼େଇ ଦେଇ କହିଲା, "ଆମେରିକାରୁ ଖାସ୍ ତୋ ପାଇଁ ଆଣିଛି ।"

"ୟା, ୱେଲକମ୍ ଟୁ ଦି ଡେନ୍!" ମୁଁ ରେମାକୁ ମୁରୁକି ହସି କହିଲି ଓ ବୋତଲଟିକୁ ଅନୁଗୃହୀତ ହୋଇ ଗ୍ରହଣ କଲି ।

ଅଶୋକ କହିଲେ, "ମୁଁ ତୁମ ବିଷୟରେ ଏତେ ଶୁଣିଛି! ଆମେ ସେଥିପାଇଁ ଏଥର ଭୁବନେଶ୍ୱରରୁ ସିଧା ଦିଲ୍ଲୀ ନ ଯାଇ କଲିକତା ହେଇ ଦିଲ୍ଲୀ ଯିବୁ । ସେଠୁ ଆମ ଫ୍ଲାଇଟ୍ ଅଛି ।"

"ମୁଁ ତ କ୍ରାଇମ୍ ପେଟ୍ରୋଲକୁ ଯିବା ଭଳିଆ କାମ କରିନି!" ମୁଁ ଟି ସାର୍ଟ୍ ଗଳଉ ଗଳଉ କହିଲି ।

"ରେମା ସବୁବେଳେ ତୁମ କଥା କୁହେ, ତୁମେ କେତେ ଭଲ ଚିତ୍ର ଆଙ୍କ!"

ମୁଁ ରେମାକୁ ଆଖି ବଡ଼ ବଡ଼ କରି ଆମୋଦିତ ହେଲା ଭଳି ଅନେଇଲି ।

"ଅଶୋକ ସାହିତ୍ୟ ପାଗଳ । ଆମେରିକାରେ ବେଷ୍ଟସେଲର ବାହାରିଲା ମାନେ କିଣିବେ । ସେ ଏବେ ଗୋଟେ ନଭେଲ ଲେଖୁଛନ୍ତି ।" ରେମା ଅଶୋକଙ୍କୁ ଗୃହିଁ କହିଲା, "ତୁମ ନଭେଲ କଥା କହୁନ ।" ଯ୍ୱା କହି ରେମା ମୋ କୋଠରିରେ ଏଣେ ତେଣେ ପଡ଼ିଥିବା ଚିତ୍ର ନିରେଖି ଦେଖିବାରେ ଲାଗିଲା । ମୁଁ ମୋନେଙ୍କ ପ୍ରସିଦ୍ଧ କଇଁଫୁଲ ଚିତ୍ରର ବିରାଟ ଛବିଟିଏ ବନ୍ଧେଇ ରଖିଥିଲି । ଆଉ କେବେ କେମିତି ମୋର କିଛି ପ୍ରିୟ ଶିଳ୍ପୀଙ୍କଠୁଁ ଉପହାର ପାଇଥିବା ଚିତ୍ର ଏଠି ସେଠି ଥୁଆହେଇଥିଲା ।

"ହଁ, ଲେଖିବା ତ ଆରମ୍ଭ କରିଛି । ଗୋଟେ ମଡର୍ଣ୍ଣ ଲଭ୍ ଷ୍ଟୋରୀ । ଦୁଇ ପ୍ରବାସୀ ପରିବାରର କାହାଣୀ ।" ଅଶୋକ ମୋତେ ଗୃହିଁ କହିଲେ ।

"ବଢ଼ିଆ! ଓଡ଼ିଆରେ ଏମିତି କାହାଣୀ ମୁଁ କାଇଁ ପଢ଼ିନି ।" ମୁଁ କହିଲି ।

"ଓଡ଼ିଆରେ କିଏ ଲେଖିବ ଯେ? ଏଠି ମାର୍କେଟ କାଇଁ? ମାଇଁ ନଭେଲ ଇଜ୍ ଇନ୍ ଇଙ୍ଗ୍ଲିଶ୍ । ସେଠିକା ଏଜେଣ୍ଟ ଧରି ଭଲ ପବ୍ଲିଶରଟେ ମିଳିଗଲେ ବହି କ୍ଲିକ୍ କରିଯିବ । ଲେଖା ଯାହାହେଉ ଯଦି ମାର୍କେଟିଙ୍ଗ ଆଉ ବିଜ୍ଞାପନ ଠିକ୍ ହେଇପାରିଲା, ତାହେଲେ ବହି ବେଷ୍ଟସେଲର ହେବ ହିଁ ହେବ! ମୁଁ ପ୍ରତିଦିନ ସମୟ କାଢ଼ି ଘଣ୍ଟେ ଲେଖେ । ତିନିମାସ ଭିତରେ ତାକୁ ଯେମିତି ହେଲେ ସାରିବି । ଆମ କମ୍ପାନୀ ମାର୍ଫତରେ ଜଣେ ଭଲ ଏଜେଣ୍ଟକୁ ଯୋଗାଯୋଗ କରିଛି । ବର୍ଷେ ଭିତରେ ମୋ ନଭେଲ ମାର୍କେଟକୁ ଆସିବ ।"

ମୁଁ ମନେ ମନେ ଭବିଲି – ହାୟରେ ବିଧାତା କି ଛଳ କଲ, ଅଶୋକ ଆଉ ରେମାକୁ ସମାନ ଛାଞ୍ଚରେ ଗଢ଼ିଲ!

"ତୋ ପେନସିଲ ରେଖାଚିତ୍ରଗୁଡ଼ା ଆଗ ଅପେକ୍ଷା ଆହୁରି ଭଲ ଦିଶୁଛି ।"

ରେମା ମୁହଁ କୁଞ୍ଚୁଣ୍ଡା କରି କହିଲା, "ତୈଳଚିତ୍ର କି ଆକ୍ରିଲିକ୍ କାଇଁ ଦେଖୁନି ?" ରେମା ମୋ କାଗଜପତ୍ର ଘଣ୍ଟାଘଣ୍ଟି କଲା ।

"ମୋ ଚିତ୍ରରୁ ମୋର କିଛି ଶିଖିବାର ନାହିଁ ।" ମୁଁ କହିଲି ।

ରେମା ମୋତେ ଗୋଟେ ତୀର୍ଯ୍ୟକ୍ ଦୃଷ୍ଟି ଦେଲା ।

"ଜାଣିଛୁ, ମୁଁ ନ୍ୟୁୟର୍କରେ ମୋର ଏକକ ଚିତ୍ର ପ୍ରଦର୍ଶନୀ କରିଥିଲି । ବହୁ ପ୍ରସିଦ୍ଧ ଶିଳ୍ପୀ, ଦର୍ଶକ ଆସିଥିଲେ । ଭଲ ବିକ୍ରି ବି ହେଲା । ଦେଖିବୁ ?" ରେମା ତା ଆଇଫୋନ ବାହାର କରି ମୋତେ ପ୍ରଦର୍ଶନୀର ଛବି ଦେଖାଇଲା ।

କିଛି ଆବସ୍ଟ୍ରାକ୍ଟ ଚିତ୍ର । ମୋଟାମୋଟି ।

"ହଁ, ସେଠି ଲୋକଙ୍କ ପାଖରେ ପ୍ରଚୁର ଟଙ୍କା । ତେଣୁ କଳାର ବଜାର ଭଲ ।" ମୁଁ କହିଲି ।

"ମୁଁ ଏଠି ବି ଗୋଟେ ଚିତ୍ର ପ୍ରଦର୍ଶନୀ କରିବାକୁ ଚାହୁଁଛି । ତୁ ମୋତେ ସାହାଯ୍ୟ କରିବୁ ?"

"ମୁଁ କି ସାହାଯ୍ୟ କରିବି ? ମୁଁ ତ ଆଜିଯାଏଁ ଏକକ ଚିତ୍ର ପ୍ରଦର୍ଶନୀଟେ କରିବି କରିବି ବୋଲି କରିପାରିନି ।"

"ନାଇଁ, ଗାଲେରୀ ସହ ଯୋଗାଯୋଗ ମୁଁ କରିବି । ମୁଁ ନ୍ୟୁୟର୍କରେ ରହୁଛି ଶୁଣିଲେ ସେମାନେ ସାଙ୍ଗେ ସାଙ୍ଗେ ରାଜି ହେଇଯିବେ । ହେଲେ ତୋର ଏଠି ଯୋଉ ଚିହ୍ନା ପରିଚୟ ଅଛନ୍ତି ସେମାନଙ୍କୁ କହିବୁ । ଯାହା କହ ମୁଁ ଶୁଣିଛି ତୋର ଗୋଟେ ଥାଟ ଅଛି !"

"ସତେ ନା କଅଁଣ ? ମୁଁ ଆଜି ଜାଣିଲି !" ମୁଁ ମୁଚୁକୁନ୍ଦ ମାରି କହିଲି ।

"ମୋ ନମ୍ବର ରଖ । ଏଥରଠୁଁ ଯୋଗାଯୋଗରେ ରହିବା । ଆଉ ମଧୁ ଲିପୁଙ୍କ ଖବର କଅଣ ? ନ୍ୟୁୟର୍କରେ ମୁଁ ଏତେ ବ୍ୟସ୍ତ ଯେ ତୋତେ କଅଣ କହିବି ? ସେଠିକା ଜୀବନ ଶୈଳୀ ତ ଏକବାରେ ଅଲଗା । ଲିପୁ ସହ ଦେଖା କରିବାକୁ ମନ, ହେଲେ କଅଣ କରିବି ? ତୁ ମଝିରେ ମଝିରେ କଥା ହଉଛୁ ?"

"ହଁ, କେତେବେଳେ କେମିତି । ସମସ୍ତେ ନିଜନିଜ ଜଞ୍ଜାଳରେ ବ୍ୟସ୍ତ !"

ରେମା ମୋତେ ତା ନମ୍ବର ଡ଼ାକିଲା । ମୁଁ ଇଚ୍ଛା ନ ଥିଲେ ବି ବାଧ ହେଇ ନମ୍ବର ଟିପିଲି ।

"ଆଇଫୋନ!" ରେମା ମୋ ଫୋନ ଦେଖି ଚମକି ପଡ଼ିଲା ।

"ଜଣକର ତୈଳଚିତ୍ରଟେ କରିଥିଲି, ଟଙ୍କା ନ ଦେଇ ଏଇ ଫୋନଟି ଦେଇଥିଲେ । ତାଙ୍କୁ ମାଗଣାରେ କୋଉଠୁ ମିଳିଥିଲା ବୋଧେ ।"

"ଯାହା କହ ତୋର ଗୋଟେ ବୋହେମିଆନ ଆର୍ଟିଷ୍ଟ ଲାଇଫ୍! ମୋର ତ ଈର୍ଷା ହଉଛି ।"

"ମୋର କି ଭାଗ୍ୟ!" ମୁଁ ଦାନ୍ତ ଦେଖେଇଲି ।

"ମାଉସୀ ତୋ ପାଇଁ ଚିନ୍ତିତ । ତୁ ବାହା ହଉନୁ । ନିଜେ କାହାକୁ ଠିକ୍ କରୁନୁ ? ନ ହେଲେ କହ ତୋ ପାଇଁ କାହାକୁ ଠିକ୍ କରିବି ? ଯଦି କିଛି ସମସ୍ୟା ଅଛି କହ ?" ରେମା ମୋ ଗୋଡ଼ ଟାଣିବାକୁ କହିଲା ।

ଆମ ରାଇଜରେ ଯଦି ଜଣେ ତିରିଶ ବତିଶ ବର୍ଷ ମଧ୍ୟରେ ରୋଜଗାରକ୍ଷମ ହେଇ ବାହାସାହା ନ ହେଇଛି ଏବଂ ସେ ସାହିତ୍ୟଫାହିତ୍ୟ, କଳାଫଳା ବା ଗବେଷଣାଫବେଷଣା କରୁଛି ତା ହେଲେ ସେ ନାରୀ ହେଉ ବା ପୁରୁଷ ହେଉ ତାର ଶାରୀରିକ ଯୋଗ୍ୟତା, ମାନସିକ ସୁସ୍ଥତା, ପ୍ରଜନନ କ୍ଷମତା ଇତ୍ୟାଦି ଉପରେ ଯେଉଁ ପ୍ରଶ୍ନବାଚୀ ଉଠିବ, ତାକୁ ହଜମ କରି ସୃଜନ କରିବା ଗୋଟେ ଅନ୍ୟ ପ୍ରକାର ସାଧନା ।

ମୁଁ କେବଳ ତାକୁ ଗୋଟେ ଥଣ୍ଡା ଚାହାଣି ଦେଲି ।

ସନ୍ଧ୍ୟା ପର୍ଯ୍ୟନ୍ତ ରେମା ଓ ତାର ସ୍ୱାମୀ ଓଡ଼ିଶାରେ ସାହିତ୍ୟ ତଥା କଳା କ୍ଷେତ୍ରରେ ନାମୀଦାମୀ ଲୋକମାନଙ୍କ ସହ ସେମାନଙ୍କର ପରିଚୟ, ଏଠାରେ ପ୍ରତିପତ୍ତି ବଢ଼ାଇବାର ଉଚ୍ଚାଭିଳାଷ ତଥା ନ୍ୟୁୟର୍କରେ ରହୁଥିବାର ଆଡଭାନଟେଜ୍ ଗପି ଗପି ବିଦାୟ ନେଲେ । ମୁଁ ଔପଚାରିକତା ଦୃଷ୍ଟିରୁ ଦୁହିଁଙ୍କୁ ପାଖ ଦୋକାନରୁ ଜଳଖିଆ ମଗେଇ ଖୁଆଇଲି । ମୁଁ ଫୋନ କରିବା ସଙ୍ଗେ ସଙ୍ଗେ ପିଲାଟିଏ ଆସି ଜଳଖିଆ ଦେଇଯିବା ଦେଖି ରେମା ଆଚମ୍ବିତ ହେଇଗଲା ।

ସେଦିନ ରାତିରେ ରେମା ଦେଇଥିବା ବିଦେଶୀ ପାନୀୟଟିକୁ ପିଇ ପିଇ ମୁଁ ମଧୁ ଓ ଲିପୁକୁ ସ୍କାଇପ୍ କଲି । ରେମା ଓ ତାର ସ୍ୱାମୀଙ୍କୁ ଅତିଥି ରୂପେ ପାଇବା ତଥା ସେମାନଙ୍କ ସାହିତ୍ୟ ଓ କଳା ଅଭିସାର ସମ୍ବାଦ ଜଣାଇଲି ।

ସେ ଦୁହେଁ ହସି ହସି ବେଦମ୍ ହେଲେ ।

"ସିଏ ଗୋଟେ ଜୋକ, ଲାଗିଥିଲେ ଲାଗିଥିବ!" ମଧୁ କହିଲା ।

ଗ୍ରେମାର ସାନ୍ନିଧରେ ମୁଣ୍ଡଟା ଟିଣ ହେଇଗଲା ପରିକା ଲାଗୁଥିଲା । ବିଦେଶୀ ପ୍ରଭାବରେ ତାହା ଆସ୍ତେ ଆସ୍ତେ ସ୍ୱାଭାବିକ ଅବସ୍ଥାକୁ ଫେରିବାକୁ ଆରମ୍ଭ କଲା । ରାତି ଯେତେ ଯେତେ ଗଭୀର ହେଲା ଆଖି ଆଗରେ ଆମ ଇସ୍କୁଲ ଦିନର ଛବି ସବୁ ସେତେ ସେତେ ଉଜ୍ଜ୍ୱଳ ହେଇ ଭାସିଲା – ବନ୍ଧୁତ୍ୱର କେତେ ରଙ୍ଗ ବୋଲି ହେଇ ମନଟା ଉଦାସ ହେଇଗଲା । ଆମର ଆଗର ସାଙ୍ଗସୁଖ ଆଉ ପୁଣି ଏବେକାର ହିସାବନିକାସ । ବୋତଲଟା ସାରି ମୁଁ ପୂରା ଡାଉନ୍ । ଶେଯରେ ଗଡ଼ି ପଡ଼ି ମୁଁ କଷ୍ଟେମଷ୍ଟେ କହିଲି – ଭାଇ ମହାଦେବ, ଶପଥ କରି କହୁଛି ଏଥର ଜାଗରରେ ମହାଦୀପ ଉଠିବା ଆଗରୁ ଭାଙ୍ଗପାଣି ଛୁଇଁବିନି । କିଛି ଗୋଟେ କର ଭାଇ, ଗ୍ରେମା ମୋତେ ଭୁଲିଯାଉ, ସେ ମୋତେ ବାଟଘାଟରେ ଦେଖିଲେ ନ ଚିହ୍ନୁ ।

ଓଃ, ଗ୍ରେମା ଆଖ୍ୟାୟିକାଟି ଆବଶ୍ୟକତାଠୁଁ ଅଧିକ ଲମ୍ବା ହେଇଗଲା କି ?

ହଁ, ତ ମୁଁ କଅଣ କହୁଥିଲି ପ୍ରତି ସଭାସମିତିରେ ମୋଟାମୋଟି ତିନି ପ୍ରଜାତିର ସାହିତ୍ୟିକ ଦେଖାଯାଆନ୍ତି ବୋଲି କେହି କେହି ବିଶେଷଜ୍ଞ ମତ ଦିଅନ୍ତି । ଆମର ଦ୍ୱିତୀୟ ପ୍ରଜାତି ହେଲେ ଯେଉଁମାନେ ଆଗ ଆଗ ଧାଡ଼ିରେ ବସନ୍ତି । ସେମାନଙ୍କ ଭିତରୁ ଅନେକ ମଝିରେ ମଝିରେ ମଞ୍ଚରେ ବସନ୍ତି ବା ମଞ୍ଚରେ ବସିଥିବା ବ୍ୟକ୍ତିଙ୍କ ସହ ଘନିଷ୍ଠ । ସେମାନଙ୍କ ମଧ୍ୟରୁ ସବୁଠୁଁ ବିଚକ୍ଷଣ ହେଲେ ଯେଉଁମାନେ ବକ୍ତୃତା ପରେ ପ୍ରଶ୍ନୋତ୍ତର ସମୟକୁ ଧୈର୍ଯ୍ୟର ସହ ଅପେକ୍ଷା କରି ବସିଥାଆନ୍ତି । ଧରାଯାଉ ପ୍ରସଙ୍ଗଟି ହେଲା ଓଡ଼ିଆ ପ୍ରେମ କବିତାରେ ଛାଡ଼ପୋକ ରୂପକଳ୍ପ– ସେମାନଙ୍କର ପ୍ରଶ୍ନ ଛାଡ଼ପୋକର ପ୍ରଥମ ଆବିର୍ଭାବ କେବେ ହେଇଥିଲାଠୁଁ ଆରମ୍ଭ କରି ସେ କେମିତି ଯୁକ୍ତଦୁଇ ବାର୍ଷିକ ପରୀକ୍ଷାରେ ଛାଡ଼ପୋକ ଡିସେକ୍ସନ କରି ପରୀକ୍ଷକଙ୍କୁ ଚମତ୍କୃତ କରିଦେଇଥିଲେ ଏବଂ ଥରେ କୋଲକାତା ମହାନଗରୀକୁ ପରୀକ୍ଷକ ହୋଇଯାଇ କେମିତି ଛାଡ଼ପୋକ ଦାଉରେ ଶୋଇ ପାରିନଥିଲେ, ମଧୁଚନ୍ଦ୍ରିକାରେ ଛାଡ଼ପୋକ କାମୁଡ଼ିବା ଫଳରେ କେମିତି ନୂଆ ବାହାହେଇଥିବା ସ୍ତ୍ରୀ ଆଗରେ ଅପଦସ୍ଥ ହେଇଥିଲେ କହି ହେହେ ହେଇ ହସିବେ ଓ ପ୍ରଶ୍ନକୁ ଆସିବା ପୂର୍ବରୁ ତାଙ୍କ କବିତାରେ ଛାଡ଼ପୋକ ଉପରେ ନାତିଦୀର୍ଘ ଭାଷଣଟେ ଦେଇ ପ୍ରଶ୍ନ ଓ ପ୍ରସଙ୍ଗ ମଧ୍ୟରେ ପ୍ରାୟତଃ ଚନ୍ଦ୍ର ଓ କୁମୁଦିନୀର ଦୂରତା ଥିବା ପ୍ରଶ୍ନଟିଏ ପଚାରି ଚାରିଆଡ଼କୁ ଆତ୍ମତୃପ୍ତିରେ ଅନାଇ ନିଜ ଚୌକିରେ ବସିବେ ।

ମଝି ମଝି ସ୍ଥାନଗୁଡ଼ାକ ଆଦୌ ଆଗେ ପୂରଣ ହୁଏ ନାହିଁ କିମ୍ବା ଶେଷ ପର୍ଯ୍ୟନ୍ତ ଖାଲି ରହେ ।

ବର୍ତ୍ତମାନ ତୃତୀୟ ପ୍ରଜାତିର ପଛଧାଡ଼ିରେ ବସିଥିବା ସର୍ଜକମାନେ ସବୁବେଳେ ମନେକରନ୍ତି ଯେ ସେମାନେ ମଞ୍ଚସ୍ଥ ସର୍ଜକଙ୍କଠାରୁ ଅନେକ ବେଶି କ୍ରିଏଟିଭ୍, ପୁରସ୍କୃତ ପ୍ରାପ୍ୟ ଲେଖକ କେବଳ ଲବି କରି ପୁରସ୍କାର ପାଆନ୍ତି । ଆଚ୍ଛା, ଆମର ଏଠି ଯାହା ଚାଲିଛି – ଜଣେ ଲେଖକ ବହିଟେ ଲେଖିଲା, ବହିକୁ ଟଙ୍କା ଖର୍ଚ୍ଚ କରି ପ୍ରକାଶିତ କରାଇଲା, ତାପରେ ଆହୁରି ଟଙ୍କା ଖର୍ଚ୍ଚ କରି ତିନି ତାରକା କି ଚାରି ତାରକା ହୋଟେଲରେ ଲୋକାର୍ପଣ କରାଇଲା, ସମୀକ୍ଷା ପାଇଁ ପେଟ୍ରୋଲ ପୋଡ଼ି ଯାଇ ଯାହାଙ୍କୁ ତାଙ୍କୁ ଦେଲା – ଆଉ ତାପରେ ପୁରସ୍କାର ପାଇଁ ଆବେଦନ ପତ୍ର ବାହାରିଲେ ଜଣେ ନିଜ ପାଇଁ ଅନୁକୂଳ ପରିବେଶ ସୃଷ୍ଟି ନ କରି କଣ ତା ପ୍ରତିଦ୍ୱନ୍ଦୀ ପାଇଁ ଅଧିକ ମତ ସାଉଁଟିବାରେ ଲାଗିପଡ଼ିବ ? ଭଲ ଆଉ! କିନ୍ତୁ ଯୋଉ ପ୍ରସଙ୍ଗର କଥା ପଡ଼ିଥିଲା, ଅଧ୍ୟୟନ କରି ଦେଖିଲେ ଜଣାପଡ଼େ ଯେ ପୁରସ୍କାରମଣ୍ଡିତ ଲେଖକ ଗୋଷ୍ଠୀ ଓ ତୃତୀୟ ପ୍ରଜାତିର ସର୍ଜକଗୋଷ୍ଠୀଙ୍କର ଲେଖାର ଗୁଣାତ୍ମକ ମାନ ମଧ୍ୟରେ ଆକାଶ ପାତାଳ ତଫାତ୍ ନାହିଁ । ତେଣୁ ଏମାନେ କାହିଁକି ପୁରସ୍କାର ପାଇବେନି ତାର କିଛି କାରଣ ନାହିଁ । ଏମାନଙ୍କ ବାଦ୍ କିଛି ବିଶେଷ ସ୍ୱର ଅଛନ୍ତି ଯେଉଁମାନେ ମଧ୍ୟଯୁଗର ଯୌଥ ପରିବାରର ବଡ଼ବୋହୂଙ୍କ ପରି ନୀରବ ସାହିତ୍ୟ ସେବା କରି ଅସୂର୍ଯ୍ୟଂପଶ୍ୟା ହେଇ ବହୁବର୍ଷ ରହିବା ପରେ ଆମର କିଛି ପାୱାର ବ୍ରୋକରଙ୍କୁ ମାଡ଼ି ପଡ଼େ, ଆଉ ସେମାନେ ଲାଗି ପଡ଼ି ତାଙ୍କୁ ମଞ୍ଚାଲୋକରେ ପୁରସ୍କାର ଦିଆଇ ନିଜକୁ କୃତାର୍ଥ ମଣନ୍ତି ।

କିନ୍ତୁ ଆଜିର କର୍ମଶାଳା ତ ଗୋଟେ ଗତାନୁଗତିକ ସଭା ନୁହେଁ ।

ମୁଁ ଚାରିଆଡ଼କୁ ମୁହଁ ବୁଲାଇଲି ।  ଆମ ମଣି ଭାଇ ଯେ!

ମଣି ଭାଇ କରିତକର୍ମା – ଜଳ, ସ୍ଥଳ, ବନ, ଗିରି, ଆକାଶ, ତାଙ୍କର ସବୁଠାରେ ଅବାଧ ପ୍ରବେଶ । ପ୍ରକାଶକ ରୂପେ ତାଙ୍କର ଓଜନ ଅଛି; ତାଙ୍କ ବହି ସବୁ ବଜାରକୁ ଆସିଲା ମାତ୍ରେ ଉଭାନ ହେଇଯାଏ । ସେ ନିଜେ ଦାବି କରନ୍ତି — ତାଙ୍କର ବହି ଖରାଦିନେ ଲିଙ୍ଗରାଜ ଲସି, ଶୀତରେ ଗରମ ଛଣା ବରା ଭଳି ବିକ୍ରି ହୁଏ । ଖାଲି ସେତିକି ନୁହେଁ ତାଙ୍କ ବହିର ଗୋଟେ ସ୍ୱାତନ୍ତ୍ର ଅଛି । ଥିବେ ଥିବେ ସେସବୁ ଦୂରଦୂରାନ୍ତକୁ ପାଠକମାନଙ୍କ ପାଖକୁ ଉଡ଼ିବାକୁ ଆରମ୍ଭ କରନ୍ତି । ଯୋଉଠି ମନ ସେଠି ଯାଇ ପହଞ୍ଚିଯାଆନ୍ତି । ଥରେ ସେ ମୋ ପାଖକୁ ଦିଖଣ୍ଡ ବହି କ୍ଷିପ୍ରଡ଼ାକରେ ପଠାଇଛନ୍ତି ବୋଲି କହିଲେ । ମୁଁ ସପ୍ତାହେ ଅପେକ୍ଷା କରି ଡ଼ାକଘରେ ଖୋଜା ଲୋଡ଼ା କରି ନ ପାଇଲା ପରେ ତାଙ୍କୁ ପଚାରିଲାରୁ ସେ କହିଲେ, "ମୁଁ କଅଣ କରିବି, ବହିଗୁଡ଼ା କେମିତି ଖରାରେ ଶିମଲା ପଳେଇଲେ ମ!"

ମୁଁ କହିଲି – "ଆଉ କଅଣ ମୋ ପାଖକୁ ସେମାନେ ଫେରିବେ ? ଶିମଲାରୁ ବଙ୍ଗୋପ ସାଗର ଉପର ଦେଇ ଶ୍ରୀଲଙ୍କା ଆଡ଼େ ଉଡ଼ି ଯିବେନି ?"

ଯଦିଓ ତାଙ୍କୁ ପ୍ରାୟ ସମସ୍ତେ ପଛରେ ଓ କେହି କେହି ମୁହଁରେ ଥଣ୍ଡା ଠକ କୁହନ୍ତି, ମୋ ମତରେ ତାଙ୍କର କଳ୍ପନା ଅଛି, କାହାଣୀ କହିବାର ଆତ୍ମବିଶ୍ୱାସ ଅଛି । କାହିଁକି କେଜାଣି ମୋର ତାଙ୍କ ଉପରେ କେବେ ବିରକ୍ତି ଆସିନି, ସେ କଞ୍ଚା ମିଛ କହୁଛନ୍ତି ଜାଣି ବି ତାଙ୍କ କଥା ଶୁଣି ମୁଁ ସବୁବେଳେ ଆମୋଦିତ ହେଇଛି । ମୋ ମତରେ ମଣି ଭାଇ ଯଦି ସାମାନ୍ୟ ଚେଷ୍ଟା କରନ୍ତେ, ସେ ସବୁଠୁଁ ଭଲ କଥାକାର ହେଇ ବାହାରନ୍ତେ — ଏକ ନିଶ୍ୱାସରେ ସେ ଯେତେବେଳେ ଡାହାମିଛ କହିଗ୍ଲଲନ୍ତି, ପ୍ରକୃତରେ ପ୍ରକାଶନ ଛାଡ଼ି ଲେଖାଲେଖି କରନ୍ତେ କି, ସେ ଯୋଉ ଭିତିରି କଥା ଲେଖନ୍ତେ କେହି ପରତେ ପଡ଼ନ୍ତେନି ।

ମଣି ଭାଇଙ୍କ କୃପାରୁ ଦିନେ ମୋତେ ଗୁଡ଼େ ଶୋଧା ଶୁଣିବାକୁ ପଡ଼ିଥିଲା । କର୍ମ କଷଣ ସହି ପ୍ରବାସେ ମୃତ ପ୍ରାୟ ପଡ଼ିଥିବା ଅବସ୍ଥାରେ ଦିନେ ଆମ ଦୋଅକ୍ଷରି ବିଶାରଦ ତଥା ଖତର୍‌ନାକ୍ କବି କାଲୁ ଓରଫ୍ ଓଡ଼ିଆ ଅଧାପକ କାଳିନ୍ଦୀ ମିଶ୍ର ଫୋନ ଆସିଲା — "ତୁ ଶଳା ଡ୍ୟାସ୍ କୋଉଦିନ ଗୋଟେ କବି ହେଇଗଲୁଣି ? ଭୋଁନଶୋର ଆସି ଆଉ ସାଙ୍ଗସାଥି ନାହିଁ, ଧୂଆଁଘର ନାହିଁ । ଆମେ କାନ୍ଥବାଡ଼ରୁ ଖବର ପାଉଛୁ, କଅଣ ନା ସାହିତ୍ୟ ମହାକୁମ୍ଭରେ ଯୋଗଦେବେ ଆମ ଡ୍ୟାସ୍ କବି କୁମ୍ଭାଟୁଆ !"

ବାରମ୍ବାର ମନା କରିବା ସତ୍ତ୍ୱେ ମଣି ଭାଇ ଗୋଟେ ସାହିତ୍ୟ ମହୋତ୍ସବର ସୂଚନା ଦେବାକୁ ଯାଇ ମୋ ଫଟୁ ମୁଖପୁସ୍ତିକା କାନ୍ଥରେ, ନିମନ୍ତ୍ରଣ ପତ୍ରରେ, ବ୍ୟାନର ଆଦିରେ ଛାପି ଦେଇଥିଲେ ।

ମୁଁ ବହୁତ ସାକୁଲେଇ ମଦିରା ଋଣ ପକେଇ କାଲୁକୁ ବୁଝେଇବାରେ ସମର୍ଥ ହେଇଥିଲି — "କାନ୍ଥ ମିଛ, ମୁଁ ସତ୍ୟ ।"

ଏଥର ଆମର ବବି ଭାଇ ଦୃଷ୍ଟିଗୋଚର ହେଲେ । ଦିନ ଆଲୁଅରେ ତାଙ୍କୁ ଲେଖାଲେଖି କଥା ପଗ୍ଚରିଲେ ନରମ ଗଳାରେ କହିବେ — "ସାହିତ୍ୟ କଅଣ ମୋର ଏକମାତ୍ର ଗଲୁ ? ମୋର ଏକାଧିକ ଗଲୁ ଅଛି ଯେ, ସମୟ କାହିଁ ?" ଜଣେ ମଣିଷକୁ ଗୋଟେ କଥା ବାରମ୍ବାର ପଗ୍ଚରି ନୟାନ୍ତ କଲେ ସେ ଆଉ କରିବ କଅଣ ? (ଶତ ଶତ ଗଳ୍ପର ଜନନୀ ଓ ଜନକମାନେ ସୃଜନ ସଂଯମ କଅଣ ବୁଝିବେ, ହାୟ !)

କିଛି ଦୂରରେ ମନମୋଟୁ ଅନୁବାଦକ ରୀନା — ସେ ସଭାସମିତିରେ କମ୍ ଦେଖାଯାଆନ୍ତି, ନିଶ୍ଚୟ ଏପଟେ ଅନ୍ୟ କିଛି କାମ ଥିବ । ମନ ହେଲେ କଥା ହେବେ, ମନ ନ ହେଲେ ନାହିଁ । ମୋଟ ଉପରେ ମନଇଚ୍ଛା କାରବାର ଯାଙ୍କର । ଥରେ ମୋତେ ଗାଳ୍ପିକା ବାଣୀ ପ୍ରଧାନ ମାନେ ଆମ ଆଦରର ବାଣୀ ଅପା କହିଲେ—"ଜାଣ, ସେ ମୋର ଗପ କେତେଟା ଓଡ଼ିଆରୁ ଇଂରାଜୀକୁ ଅନୁବାଦ କଲା ଯେ, ହେଲେ ଅଖାଡୁଆ କଥା ଶୁଣେଇଲା । ଦିନେ ମୁଁ ତାକୁ କହିଲି – ଗତ ସପ୍ତାହରେ ମୁଁ ଗୋଟେ ଭଲ ଗପ ଲେଖିଛି ।

ସେ କହିଲା — "ତାହେଲେ ତ ଆପଣ ଚାଲି ଯାଉ ଯାଉ ଫୁଲ ବରଷୁ ଥିବ ।"

"ଫୁଲ ବରଷା ଆଉ କାହିଁ?"

"ନ ହେଲେ ପାଦ ତଳେ ପଦ୍ମ ଫୁଟୁଥିବ । ଫକୀରମୋହନ ତ ଜୀବନକାଳ ଭିତରେ ସାତଟା ଭଲ ଗପ ଲେଖିଥିଲେ; ଆପଣ ପ୍ରତି ସପ୍ତାହରେ ଭଲ ଗପ ଲେଖୁଛନ୍ତି, ଫୁଲ ବରଷୁନି? ଆଶ୍ଚର୍ଯ୍ୟ!"

ମୁଁ ବି ତାଙ୍କର ଯେ ପ୍ରକାର ନାକବଛା ଗୁଣ କଥା ପଚାରିଲାରୁ ରୀନା ସ୍ପଷ୍ଟୋକ୍ତି ଦେଲେ— "ବୁଝିଲେ, ଆଗରୁ ମୁଁ ଏମିତି ନ ଥିଲି । କଅଣ କରିବି ଯେ ଭାଷା ସେ ଭାଷା କରି କରି ବୋଧେ ଯେ ଚିଡ଼ିଚିଡ଼ା ସ୍ୱଭାବ ବାହାରିଲାଣି । ଆଗେ ଅବସରଟା ଶୋଇ ଶୋଇ ପଢ଼ୁ ପଢ଼ୁ ଆନନ୍ଦରେ କଟିଯାଉଥିଲା । ଚିତ୍ତବିନୋଦନ ହଉଥିଲା । ହେଲେ ଏବେ ଆଉ ସେ ସୁଖ କପାଳରେ କାହିଁ? ଧରାଯାଉ ଦୂରରୁ ଝିଅଟେ ଆସୁଛି, ମୋଟାମୋଟି ଗଢ଼ଣ ସୁନ୍ଦର ଲାଗୁଛି, କିନ୍ତୁ ଯଦି ତାକୁ ଦେଖୁ ଦେଖୁ ତା ଅନ୍ତବୁଜୁଳା, ପିତ୍ତକୋଷ ଯେ ସବୁ ଦେଖାଯିବ, ସେ ଆଉ କି ସୁନ୍ଦର ଦିଶିବ?"

ଇଏ ବି ଗୋଟେ ଭାବିବାର କଥା ।

ରୀନା ଠିଆହେଇ ଜଣେ ପ୍ରବୀଣ ଅନୁବାଦକଙ୍କ ସହ ଗପୁଥିଲେ, ଯିଏକି ତୃଣମୂଳରୁ ଅନୁବାଦକୁ ଦୃଢ଼ କରିବାରେ  ଅନବରତ ଉଦ୍ୟମ କରି ଆସିଛନ୍ତି । କେଇ ବର୍ଷ ତଳେ ଭଦ୍ରବ୍ୟକ୍ତିଙ୍କର ଆତ୍ମକଥା ପ୍ରକାଶ ପାଇଥିଲା । ଜନ୍ମ, ମରଣ, ପୁନର୍ଜନ୍ମ, ଦାମ୍ପତ୍ୟ ପ୍ରେମ, ସାହିତ୍ୟ ଅନୁରାଗ ସରସ ସରସ ଲେଖା । ଯେ ଜନ୍ମରେ ନ ହେଲା ନାହିଁ କୋଉ ଜନ୍ମରେ ନିଶ୍ଚୟ ପ୍ରଚଣ୍ଡ ସାହିତ୍ୟିକ ହେବେ, ଆଉ ନ ହେବା ଯାଏ ଜନ୍ମ ପରେ ଜନ୍ମ ନେଉଥିବେ । ଶୈଶବର ବର୍ଣ୍ଣନାଟି ଚମତ୍କାର,

ହେଲେ ତାପରେ ଅଡୁଆ ଆରମ୍ଭ — ପ୍ରତି ପୃଷ୍ଠାରେ ପ୍ରାୟ ଗୁରିଶହ କୋଡ଼ିଏ ବିସ୍ମୟସୂଚକ ଚିହ୍ନ । ମୁଁ ଏଡ଼େ ବଡ଼ ହାକିମ, କିନ୍ତୁ ମୋ ଇସ୍କୁଲର ନିପଟ ମୂର୍ଖ ମୋର ଭଲ ସାଙ୍ଗ! ମୁଁ ସରଳ ଜୀବନରେ ବିଶ୍ୱାସୀ, ତେଣୁ ମୋ ପାଇଖାନା ସଫା କରା ଲୋକକୁ ମଝିରେ ମଝିରେ ଛୁଟି ଦିଏ! ମୁଁ ଅଫିସରେ ଜମା କାମ କରେନା, କିନ୍ତୁ ମୋର ପଦୋନ୍ନତି ପରେ ପଦୋନ୍ନତି! (କାହାର ଯଦି ତାଙ୍କର କାର୍ଯ୍ୟଦକ୍ଷତା ଉପରେ ସାମାନ୍ୟ ସନ୍ଦେହ ଥିବ ସେମାନେ ତାଙ୍କ ଆତ୍ମକଥାର ଶେଷ ପର୍ବଟି ପଢ଼ିବେ । ସେଥିରେ ଅଛି ତାଙ୍କ ଜୀବନର ଯାବତୀୟ ହିସାବ, ଆଉ ସେଥିରୁ ସ୍ପଷ୍ଟ ସେ ହିସାବରେ କେତେ ପାରଙ୍ଗମ, ସୁତରାଂ ନିଜ ବୃତ୍ତିରେ କେତେ ଦକ୍ଷ ।)

ସେକଥା ଛାଡ଼ । ମୁଁ କଅଁଣ କହିବାକୁ ଗୁହୁଁଥିଲି ଆତ୍ମକଥାଟା ପଢ଼ି ମୋତେ ଲାଗିଲା ଭଦ୍ରବ୍ୟକ୍ତି ନିଜ ପାଇଁ ନିଜେ ଯେମିତି ଗୋଟେ ବିସ୍ମୟ । ଜଣକର ଯଦି ନିଜକୁ ନେଇ ଏତେ ବିସ୍ମୟ ଜଣେ କି ପ୍ରଚଣ୍ଡ ସାହିତ୍ୟିକ ହେବ? ଭିତରଟା ପରସ୍ତ ପରସ୍ତ ଲାଲ୍ ଟହଟହ ବିସ୍ମୟ ଆହୁରି କଅଁଣ କଅଁଣ, ଆବରଣଟା ଯାହା ସବୁଜ – କି ସୁନ୍ଦର ପାକଳ ତରୁଭୁଜ! ଗ୍ରୀଷ୍ମପ୍ରଧାନ ରାଇଜ ବୋଲି କି କଅଁଣ ଆମର ଏଠି ତରୁଭୁଜିଆ ବ୍ୟକ୍ତିତ୍ୱଙ୍କର ଭାରି ଆଦର । ଯୁଆଡ଼େ ଅନେଇବ ସିଆଡ଼େ ତରୁଭୁଜ ।

ଧୀରେ ଧୀରେ ଜାଗାଟି ସାହିତ୍ୟିକ ଓ ସାହିତ୍ୟ ପ୍ରେମୀଙ୍କ ଉପସ୍ଥିତିରେ ଉଛୁଳିବାକୁ ଲାଗିଲା । ମୁଁ  ଗୋଟେ କଡ଼ରେ ଲମ୍ବା କାଠ ଚୌକିଟେ ଦେଖି ବସିପଡ଼ିଲି । ଛଅ ସାତ ବର୍ଷର ଡଉଲଡାଉଲ କୁନି ଝିଅଟିଏ ଆସିଥାଏ, ସବୁଜ ରଙ୍ଗର ଜାମାଟେ ପିନ୍ଧିଥାଏ । ମୋ ପାଖରେ ତା ବାପା ତାକୁ ବସେଇ ଦେଇ "ସାନୁ, ଚୁପ୍ ହେଇ ବସିବୁ, ଦୁଷ୍ଟ ହବୁନି" ତାଗିଦ କରି ଗହଳି ଆଡ଼କୁ ଆଗେଇଲେ । ଅମାୟିକ, ପରୋପକାରୀ ଭଦ୍ରବ୍ୟକ୍ତି । ସାମ୍ୟବାଦ, ସମାଜବାଦ ଆଦି ବାଦ ପ୍ରତିବାଦର ମାଡ଼ରେ ତାଙ୍କ ଯକୃତଟି ପ୍ରାୟ ଅକାମୀ ହୋଇଯାଇଛି । ତଥାପି ସଂଗ୍ରାମର ଶେଷ କାହିଁ?

ସାନୁ ଓଠ ଲମ୍ବେଇ ରୁଷିଲା ଭଳି କହିଲା — "ସବୁବେଳେ ଖାଲି କାମ କାମ, ଘରେ ଆସିଲେ ବସିକି କଅଣ ସବୁ ଲେଖିବେ । ଆଜି ବୁଲେଇ ନେଇଯିବି, କାଲି ନେଇଯିବି କହିବେ । ମୋତେ ଆଣୁ ନ ଥିଲେ । ମୁଁ ଜିଦ୍ କରି ଆସିଛି ।"

ମୁଁ ଖାଲି "ହୁଁ" କହିଲି ।

"ଜାଣିଛ, କାକୁ, ମୁଁ ନା ବାପାଙ୍କ ମୋବାଇଲ ଫୋପାଡ଼ି ଖରାପ କରିଦେଇଛି ।"

"ଚଗଲି ଝିଅ, ସେମିତି କରନ୍ତି ?" ମୁଁ ତା ଗାଲକୁ ସ୍ନେହ ଚିମୁଟା ଦେଇ କହିଲି ।

"ମୋ ସାଙ୍ଗରେ ଲୁଡୁ ନ ଖେଳି ଖାଲି ମୋବାଇଲରେ କଥା ହେବେ । ସଦାବେଳେ ସାହିତ୍ୟ ସାହିତ୍ୟ ହେବେ । ମୋତେ ଭଲ ଲାଗେନି ।"

ସେତିକି ବେଳେ ପ୍ରେମ ଓ ବିଦ୍ରୋହର ବର୍ଷୀୟାନ୍ କବି ଅନାମ ଦାସ ତାଙ୍କର ଅନୁଗାମୀ ଓ ଅନୁଗାମିନୀମାନଙ୍କୁ ଧରି ପହଞ୍ଚିଲେ । ତାଙ୍କ ମଧ୍ୟରେ ଅନ୍ୟତମା ଥିଲେ ସୁକନ୍ୟା ଦେବୀ । ଯଦିଓ ମହିଳାଙ୍କ ବେଶପୋଷାକ ଉପରେ ମୋର ବେଶି ଧାରଣା ନାହିଁ, ଦେବୀଙ୍କ ବେଶ ଦେଖି ମନେ ହେଲା ଗୋଟେ ବିଶାଳ ପାଚିଲା ପଣସ ଯାହା କୌଣସି ମୁହୂର୍ତ୍ତରେ ଫାଟିପଡିବ; ପୁଣି ତା ସହ ଅଛି ତାଙ୍କର ସାତତାଳ କୋଟେବଲ୍ କୋଟ୍ସର ଇଣ୍ଟେଲେକ୍ଟ । ଦେବୀ ସୁକନ୍ୟା ଖୁବ୍ କମ୍ ଦିନରେ ସାହିତ୍ୟିକ ମହଲରେ ନିଜର ଏକ ସ୍ୱତନ୍ତ୍ର ପରିଚିତି ଗଢ଼ିପାରିଛନ୍ତି । ବେଶି ଦିନ ତଳର କଥା ନୁହେଁ, ସେ କେମିତି କବିତା ଲେଖିବା ଆରମ୍ଭ କଲେ ତାହା ବର୍ତ୍ତମାନ କିମ୍ବଦନ୍ତୀ ।

ତାଙ୍କ ପଡ଼ୋଶୀ କବି ଗଦାଧର ସାମନ୍ତରାୟ ଓରଫ୍ ଆମର ଅତି ଅନ୍ତରଙ୍ଗ ଗଦା ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହେଇ ବନ୍ଧୁତା ବଢ଼େଇବା ପାଇଁ ତାଙ୍କୁ ଏକ କବିତା ପାଠୋତ୍ସବକୁ ନିମନ୍ତ୍ରଣ କଲା । ମୁଖ୍ୟ ଅତିଥି ଓ ମୁଖ୍ୟ ବକ୍ତାଙ୍କୁ ଟିକେ ଫୁଲତୋଡ଼ା ଦେଇ ସ୍ୱାଗତ କରିବା ଦାୟିତ୍ୱ ବି ତାଙ୍କୁ ଦେଲା । ସ୍ୱାମୀ କାମରୁ ଓ ପିଲାଦିହେଁ ସ୍କୁଲରୁ ଫେରିବା ବେଳକୁ ତ ପ୍ରାୟ ସନ୍ଧ୍ୟା, ଦିନବେଳେ ଟିକେ ସମୟ କଟିଯିବ ଭାବି ଦେବୀ ସୁକନ୍ୟା ସବିନୟ ନିମନ୍ତ୍ରଣ ଗ୍ରହଣ କଲେ । କବିତା ସ୍ଥାନରେ ତାଙ୍କର ସୌନ୍ଦର୍ଯ୍ୟ ତଥା ବ୍ୟବହାରରେ ଆମେ ସମସ୍ତେ ଯେମିତି ମତୁଆଲା ହେଇଗଲୁ କି ଆଉ !

ସଭା ଶେଷରେ ମୁଖ୍ୟ ଅତିଥି ତଥା ପ୍ରେମ ଓ ବିଦ୍ରୋହର କବି ଅନାମ ଦାସ ବିଦାୟ ନେବା ପୂର୍ବରୁ ଗୁରୁଗମ୍ଭୀର କଣ୍ଠରେ ତାଙ୍କୁ ପଚାରିଲେ—"ତୁମେ ଏତେ ସୁନ୍ଦର, କବିତା କାହିଁକି ଲେଖୁନ ?"

"ଶ୍ୟାଆଆଆଆଆର୍, ମୁଁ କିଏ, କବିତା କିଏ ?" ଦେବୀ ସେଇ ମୁହୂର୍ତ୍ତରେ ଲଜ୍ଜାର ନଦୀଟେ ହେଇ ଆମ ସମସ୍ତଙ୍କ ହୃଦୟରେ ବହିଗଲେ ।

"ତୁମେ ହିଁ କବିତାର ସାକାର ରୂପ!" କବି ଅପଲକ ନୟନରେ ଦେବୀଙ୍କୁ ଓ ତାଙ୍କୁ ଘେରିଥିବା ଆମ ଭଳି ମାନବଙ୍କୁ ଚାହିଁଲେ । "ଇଂରାଜୀ କବି କିଟ୍ସ କହିଛନ୍ତି— ସୌନ୍ଦର୍ଯ୍ୟ ହିଁ ସତ୍ୟ, ସତ୍ୟ ହିଁ ସୌନ୍ଦର୍ଯ୍ୟ ।" ଦେବୀଙ୍କର ପିଠି ଥାପୁଡ଼େଇ କବି ଅନାମ ଦାସ କହିଲେ । ଦେବୀ ତାଙ୍କ ପାଦଧୂଳି ନେଇ ମୁଣ୍ଡରେ ମାରିଲେ । ବିଚରା ଗଦା ମୁହଁଟା ପୂରା ଲୁଣି ଶୁଖୁଆ । ତଥାପି ନିଜ ଗାଁ ଲୋକ ହୋଇଥିବାରୁ ଗଦା ଦାସେଙ୍କୁ ଗାଡ଼ି ପର୍ଯ୍ୟନ୍ତ ଚିର ଆନୁଗତ୍ୟର ସ୍ୱର "ସାରେ, ସାରେ, ସାରେ" ଲମ୍ବେଇ ବାଟ କଢ଼େଇନେଲା ।

ସେ ଯା ହେଉ ଅସଲ କଥା ହେଲା ସେଇ ଦିନଠୁଁ ଦେବୀଙ୍କୁ କବିତା ସଂକ୍ରମଣ କଲା ଓ ଯାହା କୁହାଯାଏ, "ତାପରେ ସେ ଆଉ ପଛକୁ ଫେରି ଚାହିଁନାହାନ୍ତି ।" ସେ ପ୍ରେମ କବିତାରେ ରାତି ରାତି ବୁଡ଼ିରହିଲେ, ଆଉ ଲେଖି ଚାଲିଲେ କବିତା ପରେ କବିତା, କବିତା ପରେ କବିତା । ତାଙ୍କ ମୁଖ ପୁସ୍ତିକାର କାନ୍ଥରେ କବିତାର ଜୁଆର ପ୍ରଖର, ଆଉ ସେଥିରେ ଭାସମାନ ପାଠକ ଅଗଣିତ ।

ଏହି ଘଟଣାର ଠିକ୍ ତିନିମାସ ପରେ ଦେବୀଙ୍କର ପ୍ରଥମ କବିତା ବହି "ସାରା ଦେହ କଣ୍ଟା" ଉନ୍ମୋଚନ ଉତ୍ସବକୁ ଆମକୁ ଗଦା ନିମନ୍ତ୍ରଣ କଲା । ସେଠାରେ କବିତା ପାଠର ଆୟୋଜନ ମଧ୍ୟ ଥିଲା । କବିତା ପାଠ ସ୍ଥାନରେ ଆମେ ଜଣ ଜଣ କରି ପହଞ୍ଚିଲୁ । ସୁକନ୍ୟା ଦେବୀ ମଧ୍ୟ ତାଙ୍କ ମେଳି ଧରି ଆସି ପହଞ୍ଚିଲେ । ମୋଟ ସତର ଜଣଙ୍କୁ ନେଇ ଆମର ଏଇ ଅନ୍ତରଙ୍ଗ ଆସର ଥିଲା ।

ସମକାଳର ପ୍ରସିଦ୍ଧ କବି ଯଯାତି ପ୍ରସାଦ "ସାରା ଦେହ କଣ୍ଟା" ବହି ଉନ୍ମୋଚନ କରି ସୁକନ୍ୟାଙ୍କ ବିସ୍ମୟକର ପ୍ରତିଭାର ଉଚ୍ଛ୍ୱସିତ ପ୍ରଶଂସା କରି ନିଜ ଚିନ୍ତନ ଉପସ୍ଥାପନ କଲେ—"ସୁକନ୍ୟାଙ୍କର କାବ୍ୟିକ ରସାତଳ ରହସ୍ୟମୟ ଉପତ୍ୟକାର ଦେହ ବିଦେହ ଆତ୍ମା ପରମାତ୍ମା ସଂଯୋଗ ବା ବିଲୀନ ନୁହେଁ ବରଂ ବିଚ୍ଛେଦର ରାଗ ସନ୍ଧ୍ୟାର ଆଗମନ ଓ ଦିନକରଙ୍କର ପ୍ରତ୍ୟାବର୍ତ୍ତନ ତଥା ବିଶ୍ୱମନସ୍କତା ଅପୂର୍ବ ଅଦ୍ଭୁତ କ୍ଷିତି ବ୍ୟୋମ ଓ ଆଲୋକର ସନ୍ଧାନରେ କାଳ କାଳାନ୍ତର ପ୍ରତିବିମ୍ବିତ ।"

ସୁକନ୍ୟା ନିଜ ବହିରୁ କବିତାଟିଏ ପଢ଼ିଲେ—

ଜୀବନ ମରୁବାଲି, ତୁମ ହସ ଅମୃତର ସ୍ପର୍ଶ,
ମୁଁ ବିରହିଣୀ ଅନ୍ଧାରରେ, ତୁମ ଅପେକ୍ଷାରେ ।

ବର୍ଷୀୟାନ୍ କବି ଅନାମ ଦାସ ଗଳା ଝାଡ଼ି ମନ୍ତବ୍ୟ ଦେଲେ—"ପ୍ରେମ

ହୃଦୟର ଅବ୍ୟକ୍ତ ଉଚ୍ଚାରଣ । ଅପ୍ରେମକୁ ପ୍ରେମ ଭାବିବା କେବଳ ଆତ୍ମପ୍ରବଞ୍ଚନା । କବି ସୁକନ୍ୟାଙ୍କ କବିତାର ପ୍ରତିଟି ଶବ୍ଦ ଏହି ସତ୍ୟ ଘୋଷଣା କରେ ।"

ଦେବୀ କେବଳ କହିଲେ—"ଶ୍ୟାଆଆଆର୍ ।" (ଏମିତି ଶାସ୍ତ୍ରୀୟ ଢଙ୍ଗରେ "ଶ୍ୟାଆଆଆର୍" ଉଚ୍ଚାରଣ ଏକ ପ୍ରକୃତି ଦତ୍ତ କଳା । ଆମ ଭଳି ଅଧମ ଏମିତି ଉଚ୍ଚାରଣ କରିବାକୁ ହେଲେ ଜିହ୍ୱାକୁ ତଳମାଢ଼ିରେ ପୂରାଇ, ତଳ ଓଠ ନ ହଲାଇ ବାରମାସ ବାରଦିନ ସକାଳେ ଓ ସନ୍ଧ୍ୟାରେ ଖାଲିପେଟରେ ଅଭ୍ୟାସ କଲେ ଏହି କଳାକୁ କିଛିଟା ଆୟତ୍ତ କରିବା ସମ୍ଭବ ହୋଇପାରେ ।)

ବର୍ତ୍ତମାନ ଦେବୀ କହିଲେ, "ଆପଣ ହିଁ ମୋର ପ୍ରେରଣା ।"

କବି ଅନାମ ଦାସ ସ୍ଥିରଚିତ୍ତରେ ପ୍ରଶଂସା ମଧୁ ପାନ କରିବା ପରି ମନେ ହେଲେ । ପାଖରେ ବସିଥିବା ସାହିତ୍ୟ ବିଦ୍ୱାନ୍ ଆଲୋକ ବାବୁ ମୃଦୁ ହସରେ ନିଜର ଈର୍ଷା ଲୁଚାଇବାକୁ ଚେଷ୍ଟା କଲେ । କିନ୍ତୁ ଚୁପ୍ ରହିଲେ ଚଳିବନି!

"ଶୁଣ, ସୁକନ୍ୟା (ନାଁ ଧରି କହିଲେ ବେଶି ପ୍ରଭାବଶାଳୀ ହୋଇଥାଏ), କୃଷ୍ଣସିଂହ ମହାଭାରତରେ କୁହାଯାଇଛି—କେତେ ନାରୀ ହୋଇଣ କାମରେ ଲମ୍ପଟ, ପାଖେ ଥାଇ ପକାଉଛନ୍ତି ଆଲଟ । ତୁମ କବିତାରେ ମୁଁ ସେଇ ଝଲକ ଦେଖି ପାରୁଛି ।" ଦେବୀ ସଭକ୍ତି ପ୍ରଣାମ କଲାରୁ ବିଦ୍ୱାନ ଗଦ୍‌ଗଦ୍ ହୋଇ ପଡ଼ିଲେ ।

ଦେବୀଙ୍କ ପରେ ଆମେ ଜଣକ ପରେ ଜଣେ ସ୍ୱଲିଖିତ କବିତା ପଢ଼ିଲୁ ଏବଂ "ଭଲ", "ହାତ ଧୀରେ ଧୀରେ ପାକଳ ହେବ", "ଆହୁରି ସାଧନା ଜରୁରୀ" ଆଦି ମନ୍ତବ୍ୟ ଶୁଣି ନିଜ ଚୌକିକୁ ଫେରିଲୁ ।

ଏଥର ଆମେ ସବୁ ନିଜ ସ୍ୱଭାବାନୁସାରେ ଛୋଟ ଛୋଟ ଦଳରେ ବିଭକ୍ତ ହୋଇଗଲୁ । "ସିଝା ପରିବା ଝୋଳ ହୋଇ ଆସୁଛି" କହି କବିତା ପାଠୋତ୍ସବକୁ ସାଫଲ୍ୟମଣ୍ଡିତ କରିଥିବାରୁ ଜଣ ଜଣ କରି ସମସ୍ତଙ୍କୁ ଧନ୍ୟବାଦ ଜଣାଇଲା ଗଦା । ଆମକୁ ଅକାରଣେ କିଛି ଗେଳା ନ କରିବାକୁ ବି ଚେତେଇ ଦେଇଗଲା । କିନ୍ତୁ ଆମେ ବି ଗୃହିଜଣ ଆଉ କିଏ କହୁ ନ କହୁ ନିଜକୁ କାହିଁକି କମ୍ ଭାବିବୁ – ଆମର ଯାହା କବିତାରେ ପୋଖତମାନଙ୍କୁ ନା ଦିଶେ "ବୀରତ୍ୱ" ନା "ଝଲକ"? ସନ୍ଧ୍ୟା ଟିକେ ଗାଢ଼ ହେଲେ ହିଁ ଆମେ ବୃଦ୍ଧସାଧୁଙ୍କୁ ଲୋଡ଼ୁ । ଏବେ ତାଙ୍କ ପ୍ରଭାବରେ ଆମେ ମୁକୁଳା ଅନୁଭବ କଲୁ ।

"ଗୃହିଜିଶ ତ କେବେଠୁଁ ଟପିଲାଣି, ଦାଢ଼ି ତ ଲୁଣ ଆଉ ଗୋଲମରିଚ,

ଅଥଚ ହାତ ମୋର ସେଇ ଶିଶୁ ହାତ!” ବବି ଭାଇ ସଦ୍ୟ ବଢ଼ାଇଥିବା ଫ୍ରେଞ୍ଚ୍ କଟ୍ ଦାଢ଼ି ଆଉଁସି ନିଜ ହାତପାପୁଲିକୁ ଓଲଟପାଲଟ କରି କହିଲେ ।

“ଆଜିର କବିତାସବୁ ସ୍ମରଣୀୟ ହେଇରହିବ ।” ପ୍ରିୟରଞ୍ଜନ ବୃଦ୍ଧସାଧୁ ମାଡ଼ରେ କହିଲା ଯଦିଓ ସେ ଗୋଟେ ଧାଡ଼ି ମନେ ପକେଇ କହିପାରିଥାନ୍ତା କି ନାହିଁ ସନ୍ଦେହ । ନ ହେଲେ ପ୍ରିୟ ଚିରକାଳ ଜଣେ ବିଦଗ୍ଧ ସାହିତ୍ୟ ରସିକ ।

“ତୁ ଖାଲି ତାଳି ପକା!” ବବି ଭାଇ ହଠାତ୍ ଖୁବ୍ ଗୋଟେ ମହାଜାଗତିକ ପ୍ରେରଣା ପାଇବା ଭଳି ମନେ ହେଲା । ସେ କହିଲେ, “କି କବିତା ପଢ଼ିଛୁ ତୁ? କଅଣ ତୁ ବୁଝୁ? ମୁଁ ଯୋଉ ସବୁ କବିତା ଲେଖିନି, ସେସବୁ ତୁ ପଢ଼ିଛୁ?”

ପ୍ରିୟ ଅପରାଧୀ ଭଳି କୁଁ କୁଁ ହେଲା—“ନାଁ ଭାଇ, ମୁଁ ତ ପଢ଼ିନି ।”

“ମୁଁ ଯୋଉ ସବୁ କବିତା ଲେଖିନି, ତୁ କଅଣ ପଢିଛୁ? ବାପଧନ, ମୁଁ ଜାଣେ ତୁ ପଢ଼ିନୁ । ତୁ ସେସବୁ କାଇଁ ପଢ଼ିବୁ? ତୁ ଥରେ ଖାଲି ମୋର ସେ କବିତାଗୁଡ଼ା ପଢ଼ିଥାନ୍ତ, ଆଜି ଏସବୁ ସ୍ମରଣୀୟ ମନେ ହେଇନଥାନ୍ତା, ହୁଁ ।” ବବି ଭାଇ ଏକଦମ୍ କ୍ଷୁବ୍ଧ ।

“ଭାଇ, ତୁମେ ରାଗନା । ତୁମେ ଯଦି ରାଗିବ, ମୁଁ କାନ୍ଦିବି । ସତ କହୁଛି ମୁଁ କାନ୍ଦିବି ।” ପ୍ରିୟ ବହୁଦିନରୁ ବବିଭାଇଙ୍କର ମୁଗ୍ଧ ପ୍ରଶଂସକ । କେବଳ ବବିଭାଇଙ୍କର ନୁହେଁ ନିଜ ଖଟିର ସାହିତ୍ୟିକମାନଙ୍କ ପାଇଁ ସେ ପକ୍ଷପାତୀ ବି ହେଇପାରେ । ତଥାପି ପ୍ରିୟ ଗୋଟେ ସ୍ୱିଟହାର୍ଟ୍ ।

ପ୍ରିୟ କାନ୍ଦୁଣୁମାନ୍ଦୁଣୁ ହଉଛି ଗଦା ଡ଼ାକ ଦେଲା, “ଆଉ ଡ଼େରି କରନାରେ! ଶୀଘ୍ର ଭୋଜନ କାମଟା ସାର । ଖବରକାଗଜକୁ ଛବି ସମୟରେ ପଠେଇଲେ ତ ବାହାରିବ । ନ ହେଲେ କାଲି ସକାଳେ ସଫଳ ଆୟୋଜକ ବୋଲି ମୋତେ ଗ୍ୱରିଟା ଲୋକ କି ଭାଉ ଦେବେ?”

ଦେବୀଙ୍କର ପ୍ରଥମ ବହିର ପାଠକାର୍ପଣର ଫଟୁ ତାପରଦିନ ମୁଖ୍ୟ ଖବରକାଗଜଗୁଡ଼ିକର ଶୋଭାବର୍ଦ୍ଧନ କରିଥିଲା ।

ମୁଁ ଇଆଡ଼େ ସିଆଡ଼େ ଆଖି ପକେଇଲି । ଗଦାଟା କାଇଁ ଦେଖାଯାଉନି? ପ୍ରିୟ ବି ତ ନାହିଁ । ଆଜି ଭଳି ମେଳାରେ ଯଦି ଗଦା କି ପ୍ରିୟ ନ ରହିଲେ ଆଉ କଅଣ ଜମିବ? ମୁଁ ଗଦାକୁ ହ୍ୱାଟ୍ସଆପ କଲି – “ବନ୍ଧୁ, କୋଉଠି?” ପ୍ରିୟକୁ ବି ହ୍ୱାଟ୍ସଆପ କଲି – “ସ୍ୱିଟହାର୍ଟ୍, କୋଉଠି? ସକାଳୁ ନିଦ ଭାଙ୍ଗିନି?”

ଗଦା, ପ୍ରିୟ, କାଳୁ ଆଉ ମୋର ଗୋଟେ ହ୍ୱାଟ୍ସଆପ୍ ଗ୍ରୁପ୍ ଅଛି ଯାହା ଆମେ କେବେ ବ୍ୟବହାର କରୁନା । ଥରେ କିଛି ସାହିତ୍ୟିକମାନଙ୍କର ଡ଼ଗର ବେଳାଭୂମି ଯିବାର ଗୋଟେ ଯୋଜନା ହେଲା । ବହୁତ ଜଣ ହଁହାଁ କଲେ ହେଲେ ଗଲା ବେଳକୁ ଆମେ ଚାରିଜଣ ହିଁ ଗଲୁ । ଗଦା ସେଇ ଦୁଇଦିନ ଓ ତିନି ରାତିର ସ୍ମୃତିରେ ଏଇ ଗ୍ରୁପଟି ତିଆରି କରିଥିଲା । ସେଥିରେ ଆମର ଡ଼ଗର ଫଟୁ ସେୟାର ହେଇଥିଲା ।

ମୁଖ୍ୟ କଥା ସେୟା ନୁହେଁ । ମୁଖ୍ୟ କଥା ହେଲା ସେଠି ପହଞ୍ଚିଚି କି ନାହିଁ ପ୍ରିୟ ଡ଼ଗର ବେଳାଭୂଇଁ ପ୍ରେମରେ ପଡ଼ିଗଲା ।  ସେ ଆଉ ବେଳାଭୂଇଁ ଛାଡ଼ି କୁଆଡ଼େ ହଲିବାକୁ ଚାହିଁଲାନି । ସେଦିନ ପୁନେଇଁ ରାତିରେ ଡ଼ଗର ବେଳାଭୂଇଁ ଆମକୁ ମାତାଲ କଲା, ତା ଉପରେ ଆମେ ଭଲ କି ପକେଇ ଦେଲୁ । କାଳୁକୁ ସମ୍ଭାଳେ କିଏ? କିନ୍ତୁ ରକ୍ଷା ଯେ ନିଶା ହେଇଗଲେ ସେ ଭଦ୍ର ହେଇଯାଏ, ଦୋଅକ୍ଷରି ପ୍ରାୟ ଭୁଲିଯାଏ । ସିଏ ଆମ ସାହିତ୍ୟ ଉପରେ ତାର ଯୋଉ ମୌଳିକ ମନ୍ତବ୍ୟ ସବୁ ଦେଲା, କଅଣ ଆଉ କହିବି ?

କାଳୁ କହିଲା, "ପ୍ରିୟ, ଶୁଣୁଛୁ?"

"ମୋତେ ମୋ ପ୍ରିୟା ସହ ଏକୁଟିଆ ଛାଡ଼ିଦିଅ ।"

"ତା କଥା ଛାଡ଼ । ଆମେ ଶୁଣୁଛୁ, ତୁମେ କୁହ ।" ଗଦା କହିଲା । ଗଦା ଆମର ଘୋଡ଼ା, ଯେତେ ସୁରା ଭିତରକୁ ଗଲେ ବି ଯେକୌଣସି ପରିସ୍ଥିତିରେ ସେ ପଲିଟିକାଲି କରେକ୍ଟ ରହିପାରେ ।

"ଆମର ଏଠି ଆଲୋଚନା କହିଲେ କଅଁଣ କହିଲ? ଆଲୋଚନା ମାନେ ହେଲା — ସେ ଗୋଟେ ଷେଣ୍ଢ ଯେ, ହେଲେ ସେ ଗୋଟେ ବଳଦ ହେଇଥିଲେ ସାହିତ୍ୟ ଚାଷରେ ବେଶି ଲାଗିଥାନ୍ତା । ଷେଣ୍ଢ ହେଇକି ସେ କଅଁଣଟା କରିପକେଇଛି କି? ଗାଈ ହେଇଥିଲେ ସିନା ସମସ୍ତଙ୍କୁ ଲାଭ ହେଇଥାନ୍ତା! ଦୁଗ୍ଧ ମିଳିଥାଆନ୍ତା, ଦହି, ଲହୁଣୀ, ଘିଅ, ଛେନାର ଅଭାବ ପଡ଼ିନଥାନ୍ତା! ଏଠି ଆମର ଯଦି ଏକାଧାରରେ ଜଣେ ଷେଣ୍ଢ, ଗାଈ ଓ ବଳଦ ହେଇନି ତାହେଲେ ତାର ଆଉ କି ମହତ ରହିଲା? କିନ୍ତୁ ଯଦି ଜଣେ କଅଁଳା ବାଛୁରୀଟେ ହେଇ ଯା ଦୁଆର ତା ଦୁଆର ଡେଇଁବ ତାହେଲେ ଅବଶ୍ୟ ଆଦର ପାଇବ । ବୁଝିଲ?"

"ବାଃ, କଅଁଣ ନ କହିଲ କାଳୁ ବାବୁ!" ଗଦା ତାଳି ମାରି କହିଲା ।

କାଲୁ ଖୁବ୍ ଗୋଟେ ଉତ୍ସାହିତ ହୋଇଗଲା । ଢେଉ ଉପରେ ଡ଼େଇଁ ଡ଼େଇଁ କହିଲା, "ଆମ ମହାବିଦ୍ୟାଳୟର ଗଣିତ ମାଷ୍ଟ୍ରେ ମୋତେ କହୁଥିଲେ । ତାଙ୍କ ବାହାଘର ଦିନରୁ ପତ୍ନୀଙ୍କ ମୁହଁରୁ ଖାଲି ଏକମାତ୍ର ସାନ ଶଳାର ପ୍ରଶଂସା – ମୋ ଭାଇ ଅସାଧାରଣ ଗାଳ୍ପିକ; ସେ ଲେଖିଲା ବେଳେ ବାହ୍ୟଜଗତ ଭୁଲିଯାଏ । ସାହିତ୍ୟ ହିଁ ତାର ପ୍ରାଣସ୍ପନ୍ଦନ । ସେ କେତେ ଜାଗାରୁ କେତେ ପୁରସ୍କାର ପାଇଲାଣି, ସମ୍ବର୍ଦ୍ଧିତ ହେଲାଣି । ବାହା ହେବାକୁ ରାଜି ହେଉନି, ନ ହେଲେ ତା ପାଇଁ ଏକତରଫା ପ୍ରେମିକାମାନଙ୍କର ଲମ୍ବା ଧାଡ଼ି । ମୋ ଭାଇର ଶହ ଶହ ପ୍ରଶଂସିକା, ମିଶ୍ରିଦାନାକୁ ଜନ୍ଦା ଘେରିଲା ଭଳି ମୋ ଭାଇକୁ ଦେଖିଲେ ପାଠିକାମାନେ ଘେରିଯାଆନ୍ତି । ପତ୍ନୀଙ୍କ ମୁହଁରୁ ଶଳାର ଏତେ ପ୍ରଶସ୍ତି ଶୁଣି ମାଷ୍ଟ୍ରେ ଆମର ଭାବିଲେ ସତକୁ ସତ ଶଳାଟି ବିଚକ୍ଷଣ ସାହିତ୍ୟିକଟିଏ ହୋଇଥିବ । ଶଳା ଆସାନସୋଲରେ ରହେ, ସେଠି କଅଣ ବଡ଼ ସରକାରୀ ଚାକିରି କରେ । ବେଳେ ବେଳେ ଏଠିକି ଆସିଲେ ମୁହଁ ମାରି ଦେଇଯାଏ । ଥରେ ତାକୁ ଡେଙ୍ଗୁ ହୋଇଗଲା । ଛୁଟି ନେଇ ଆସି ଘରେ ରହିଲା । ତା ନାନୀ ତାକୁ ତାଙ୍କ ଘରେ କିଛି ଦିନ ଆସି ରହିବାକୁ ବାଧ୍ୟ କଲେ । ଶଳା ଆସି ପହଞ୍ଚିଗଲା । ସଦ୍ୟ ଡେଙ୍ଗୁରୁ ଉଠିଥିଲେ ବି ଦେହରେ ଦୁର୍ବଳତାର ଚିହ୍ନବର୍ଣ୍ଣ ନ ଥିଲା । ସାନଭାଇକୁ ନାନୀ ଏତେ ଯତ୍ନ କଲେ ଯେ ମାଷ୍ଟ୍ରେ ଦେଖି ତାଜୁବ୍ । ମାଷ୍ଟ୍ରେ ଯେତେବେଳେ ଦେଖିଲେ ଶଳାଟା କାଗଜ କଲମ ଧରି କଅଁଣ ଚାମ୍ପୁଛି, ନ ହେଲେ ମୋବାଇଲରେ କାହା ସହ ଗପୁଛି, ନ ହେଲେ ହ୍ୱାଟ୍ସଆପରେ ଟିପାଟିପି କରୁଛି । ମାଷ୍ଟ୍ରେଙ୍କ ଆଖି ସହ ଆଖି ମିଶି ଗଲେ କହିବ, "ପୂଜା ଆସୁଛି ତ, ସେଥିପାଇଁ ପତ୍ରିକା ସମ୍ପାଦକମାନେ ରଖେଇ ଥୋଇ ଦଉନାହାନ୍ତି । ସେଇ ମାଡ଼ରେ କେତେଟା ଗପ ବି ଲେଖି ହୋଇଯାଉଛି ।"

ମାଷ୍ଟ୍ରେ ମନେ ମନେ ଭାବିଲେ, "ଓହଃ, ତାହେଲେ ଗପ ଲେଖା ଚାଲିଛି !"

ଦିନେ ରାତିରେ ଶୋଇବା ଆଗରୁ ମାଷ୍ଟ୍ରେଙ୍କ କୁନିପୁଅ ତା ବାପାଙ୍କ ପାଖରେ ଜିଦ୍ କଲା, "ମୋତେ ଗୋଟେ ଗପ କୁହ ।"

ସେଇଠୁ ମାଷ୍ଟ୍ରେଙ୍କ ପତ୍ନୀ କହିଲେ, "ତୁ ମାମୁଙ୍କ ପାଖକୁ ଯା, ସେ ବଢ଼ିଆ ଗପ ଶୁଣେଇବେ । ସେ ବହୁତ ଗପ ଜାଣିଛନ୍ତି ।"

ଭଣଜା ଯାଇ ମାମୁ କୋଠାରିରେ ପହଞ୍ଚିଲା, "ମାମୁ, ମାମୁ, ମୋତେ ଗୋଟେ ଗପ କୁହ ।"

"ହେ ନାନୀ ଏକୁ ଏଠୁ ନେ; ଗପଟେ ଅଧା ଲେଖିଛି । ସାରିଲେ ଆଜି

ଗତିରେ ପତ୍ରିକା ସଂପାଦକଙ୍କ ପାଖକୁ ପଠେଇବି । ତାହେଲେ ଯାଇ ଶାନ୍ତିରେ ଟିକେ ନିଶ୍ୱାସ ମାରିପାରିବି!”

“ତୁ କେତେ ଗପ ଲେଖୁଛୁ । ତାକୁ ଗୋଟେ ଗପ କହ, ସେ ଜିଦ୍ ଧରିଛି । ସେ ଗପ ଶୁଣୁ ଶୁଣୁ ସାଙ୍ଗେ ସାଙ୍ଗେ ଶୋଇ ପଡ଼ିବ ।”

ମାଷ୍ଟ୍ରେ ବି ଶଳାଙ୍କ ଗପ ଶୁଣିବାକୁ ସେପଟ କୋଠରି କାନ୍ଥ ପାଖକୁ ଆସି ଉତ୍କଣ୍ଠାରେ କାନ ଡ଼େରିଲେ । ମାଷ୍ଟ୍ରେଙ୍କ ପତ୍ନୀ ପୁଅକୁ କୋଳରେ ଧରି ଭାଇ ପାଖରେ ଖଟକୁ ଆଉଜି ବସିଲେ । ସେଇଠୁ ଶଳା ଆମର ଗପ କହିବା ଆରମ୍ଭ କଲା ।

ଗୋଟେ ସାପ ଥିଲା । ବେଶି ଲମ୍ବା ନୁହେଁ କି ବେଶି ଛୋଟ ନୁହେଁ । ବେଶି ମୋଟ ନୁହେଁ କି ବେଶି ସରୁ ନୁହେଁ । ଥରେ ସେ ଗୋଟେ ଗଡ଼ିଆକୁ ଗାଧେଇବାକୁ ଗଲା । ଗାଧେଇଯିବା ଆଗରୁ ତା ବିଷକୁ ଗୋଟେ ଥଳିରେ ରଖିକି ଗଲା । ଗଡ଼ିଆ ମୂଳେ ଗୋଟେ ଆମ୍ବଗଛ ଥିଲା । ତା ଡ଼ାଳରେ ଗୋଟେ କୁଆ ବସିଥିଲା । କୁଆଟା ଦେଖିଲା ସାପ ଥଳିରେ କଣ ରଖିକି ଗଲା । କୁଆ ଯାଇକି ସେ ଥଳି ଖୋଲି ବିଷ ଟିକେ ଖୁମ୍ପିଦେଇ ଉଡ଼ିଗଲା । ଅଳ୍ପ ଦୂରରେ ଯାଇ କୁଆଟା ମରିକି ପଡ଼ିଲା ।

ଖରାଦିନ । ସାପଟା ଗଡ଼ିଆରେ ଆନନ୍ଦରେ ପହଁରୁଥାଏ । ଆମ୍ବଗଛ ଡ଼ାଳରେ ଦିଗ୍ଗୁରିଟା ଗୁଣ୍ଡୁଚି ମୂଷା ଡ଼େଇଁ ଡ଼େଇଁ ଖେଳୁଥାଆନ୍ତି । ଗୋଟେ ଗୁଣ୍ଡୁଚିର ଦୃଷ୍ଟିରେ ଥଳିଟା ପଡ଼ିଲା । ସେ କଅଁଣ ଅଛି ବୋଲି ଆସି ଟିକେ ଗୁଖିଲାରୁ ସେଇଠି ଛଟପଟ ହେଇକି ମରିଗଲା ।

ସେତିକିବେଳେ ସେ ବାଟରେ ଗୋଟେ କୁକୁର ଯାଉଥିଲା । ସେ ଦେଖିଲା ଥଳିଟା ପଡ଼ିଛି । ସେ ଥଳିଟାକୁ ନେଇ ଗଡ଼ିଆଠୁଁ ଟିକେ ଦୂରକୁ ପଳେଇଲା । ଆଉ ଗୋଟେ କୁକୁର ଖେଦି ଆସିଲା । ଦି କୁକୁରଙ୍କ ଖେମ୍ପାଖେମ୍ପିରେ ଥଳିଟା ଫିଟିଗଲା, ବିଷତକ ଗଡ଼ିଆରେ ପଡ଼ିଗଲା ।

ସାପ ଗାଧେଇକି ଆସି ଦେଖିଲା ଥଳି ନାହିଁ । କଅଣ କରିବ? ସେ ତା ବିଷ ବିନା କେମିତି ବଞ୍ଚିବ? ସାପଟା ସର୍ବସ୍ୱ ହରାଇବା ଦୁଃଖରେ ଏଣେ ତେଣେ ପାଗଳଙ୍କ ଭଳି ତା ବିଷକୁ ଖୋଜିବୁଲିଲା ।

ସେଇ ଗଡ଼ିଆ ହିଁ ଗାଁରେ ଏକମାତ୍ର ଗଡ଼ିଆ । ଗାଁ ଲୋକେ ଗାଧେଇବାକୁ, ପାଣି ପିଇବାକୁ ତାରି ଉପରେ ନିର୍ଭର କରନ୍ତି । ଗାଈଗୋରୁ ବି ସେଇ ଗଡ଼ିଆରୁ

ପାଣି ପିଅନ୍ତି । ତା ପରଦିନ ସକାଳୁ ଦେଖାଗଲା ଗାଁରେ ପିଲାଛୁଆ, ବୁଢ଼ାବୁଢ଼ୀ, ଗାଈଗୋରୁ, ଛେଳିମେଣ୍ଢା, କୁକୁଡ଼ାବତକ, କୀଟପତଙ୍ଗ ସମସ୍ତେ ମରିପଡ଼ିଛନ୍ତି ।"

ସେପଟ କୋଠରିରେ ଦାନ୍ତଚିପି ମାଷ୍ଟ୍ରେ କହିଲେ, "ୟେ ଶଳାଃଟା ଏମିତି ଡ୍ୟାସ୍ ଗପ ଲେଖୁଛି!"

ଗୋଟେ ଲମ୍ବା ପଜ୍ ଦେଇ ଆମ ଗଳ୍ପିକ ମହୋଦୟ ପଚ୍ଚରିଲେ, "ନାନୀ, କେମିତି ଲାଗିଲା ?"

ନାନୀଙ୍କ ଗଳା ଓଦା, ଆଖି ଲୁହ ଛଳଛଳ । ସେ ଦୁଃଖରେ କଥା କହିପାରିବା ଅବସ୍ଥାରେ ନଥିଲେ । କୁନିପୁଅ କେତେବେଳୁ ଶୋଇପଡ଼ିଥିଲା ।

"ଓଃ କି କରୁଣ! ମୁଁ ଆଜିଯାଏଁ ଏମିତି ଗପ ତ ପଢ଼ିନି । ଏଇଟା ଏକବାରେ ଗୋଟେ ନିଆରା ଗପ । ସାପଟା ବିଷ ବିନା କେମିତି ବଞ୍ଚିବ ? ତୁ କେମିତି ଏମିତି କଳ୍ପନା କରିପାରିଲୁ ? ସତରେ ତୋ ଉପରେ ମାଆ ସରସ୍ୱତୀଙ୍କ ଅଶେଷ କୃପା । ନ ହେଲେ କଣ ସମସ୍ତେ ଏମିତି ଗପ ଲେଖିପାରିବେ ? ଏତେ କମ୍ ବୟସରେ ତୋର କେତେ ପରିପକ୍ୱ ଦୃଷ୍ଟିଭଙ୍ଗୀ! ଗପର ବିଷୟବସ୍ତୁ, ଶୈଳୀ, ଚରିତ୍ର ଚୟନ ସବୁ ଚମତ୍କାର । ଗାଁର ଦୃଶ୍ୟକୁ କି ନିଖୁଣ ଭାବେ ଫୁଟାଇପାରିଛୁ! ତୋର ମନେ ଅଛି ଆମ ମାମୁଘର ଗାଁର ଗଡ଼ିଆ କୂଳେ ଗୋଟେ ଆମ୍ବଗଛ ଥିଲା, ଆମେ ସେଠି ଡ଼ାଳମାଙ୍କୁଡ଼ି ଖେଳୁଥିଲେ ।"

"ସେଇ ଗଡ଼ିଆ ଆଉ ଆମ୍ବଗଛ ମୋ ସ୍ମୃତିରେ ଆଜି ବି ଉଜ୍ଜୀବିତ, ତାକୁ ନେଇ ଗୋଟେ ଗପ ଲେଖିବି ବୋଲି ବହୁଦିନରୁ ଭାବି ଭାବି ଆଜି ଏ ଗପଟିକୁ ଶେଷ କଲି । ଦେଖିବୁ କେତେ ହ୍ୱାଟ୍ସଆପ ମତ ପାଇଲିଣି ?"

"ଦେଖିବି କଅଣ ? ମୋତେ ତୋ ଲୋକପ୍ରିୟତା ଅଛପା ଅଛି ? ତୁ ତୋର ସାରସ୍ୱତ ସାଧନା ଜାରି ରଖେ । ତୁ ଆମ ପରିବାରର ଗୌରବ । ଆମ ସାହିତ୍ୟର ଗୌରବ ।"

ସାନଭାଇକୁ ଯଥେଷ୍ଟ ଗୌରବାନ୍ୱିତ କରି ସାରି ମାଷ୍ଟ୍ରେଙ୍କ ପତ୍ନୀ କୁନିପୁଅକୁ କାଖେଇ ନିଜ ଶୋଇବା ଘରକୁ ଆସିଲେ । ପୁଅକୁ ଶୁଆଇ ଦେଇ ଗଡ଼ିପଡ଼ିଲେ ।

"ମୋ ଭାଇ ଗପ ଯଦି ତୁମେ ଶୁଣିଥାଆନ୍ତ ନା, ନ କାନ୍ଦି ରହିପାରିନଥାନ୍ତ । କି କଳ୍ପନା ଶକ୍ତି! କି ପ୍ରତିଭା!"

"ହଁ, ଏ ଘରକୁ ଶୁଣାଯାଉଥିଲା ।" ମାଷ୍ଟ୍ରେ କୌତୁକ କରି କହିଲେ ଆଉ

ପଗ୍ଭରିଲେ, "ଆଚ୍ଛା କହିଲ, ଗୋଟେ ଛୋଟିଆ ସାପର ଏମିତି କେତେ ବିଷ ଯେ ଗାଁଟା ଯାକ ସମସ୍ତେ ମରିଗଲେ?"

ପତ୍ନୀଙ୍କୁ ଆଉ ସମ୍ଭାଳେ କିଏ? ସେ ଏକବାରେ ଖଡ୍ଗହସ୍ତା ।

"ତୁମର ତ ଅଙ୍କ କଷି କଷି ଜୀବନ ଗଲା! ମୋ ଭାଇର ଗପ ବୁଝିବାର ଶକ୍ତି ତୁମର କୋଉଠୁ ଆସିବ?" ପତ୍ନୀ ମୁହଁ ମୋଡ଼ି ଅନ୍ୟ ଆଡ଼କୁ କଡ଼ କରି ଶୋଇପଡ଼ିଲେ ।

ଆମର ହୋ ହୋ ହସ ସମୁଦ୍ର ଢେଉର ଶବ୍ଦ ସହ କୁଆଡ଼େ ମିଳେଇଗଲା ।

କାଳୁ କହିଲା, "ମୁଁ ତ ଶ୍ରେଣୀଗୃହରେ ପିଲାଙ୍କୁ ପଢ଼େଇଲା ବେଳେ ପ୍ରଥମ କ୍ଲାସରେ କୁହେ – ପିଲେମାନେ, ଗୋଟେ ଲେଖାର ମାନ କେମିତି ନିରୂପଣ କରିବ? ପିଲେ ସବୁ ଲମ୍ବାଚଉଡ଼ା ଉତ୍ତର ଦେବେ । ମୁଁ କହିବି ନାଁ । ମନେରଖ, ଭଲ ଲେଖା ତିନିପ୍ରକାରର – ମୁଣ୍ଡଫଟା ଲେଖା, ଛାତିଫଟା ଲେଖା ଆଉ ଗା..."

"ଆମେ ବୁଝିଗଲୁ ବୁଝିଗଲୁ!" ମୁଁ କହିଲି ।

"ଓହ୍ଃ, କି ଭଦ୍ରଲୋକ! ହଉ । ମୁଣ୍ଡଫଟା ଲେଖା, ଛାତିଫଟା ଲେଖା, ଡ୍ୟାସଫଟା ଲେଖା । ଗୋଟେ ଲେଖା ପଢ଼ିବ ଲାଗିବ ଛାତିଟା ଏଇକ୍ଷିଣା ଫାଟିପଡ଼ିବ କି! ମୁଣ୍ଡଟା ଏଇକ୍ଷିଣା ଫାଟିଯିବକି । ତାକୁ ଭଲ ଲେଖା କୁହାଯିବ । ପିଲାମାନେ ଯୋଉ ଇମ୍ପ୍ରେସ୍ ହୁଅନ୍ତି! ତାଳିମାଡ଼ରେ କ୍ଲାସ କମ୍ପେ ।"

"ଏକଦମ୍ ଅରିଜିନାଲ୍, କାଳୁ ବାବୁ!" ଗଦା ମୋ ଆଡ଼କୁ ଅନାଇ କହିଲା ।

"ହଁ, ଦେହ ଭିତରେ କିଛି ଗୋଟେ ଫାଟିଫୁଟି ନ ଗଲେ ଆଉ ଲେଖା ପଢ଼ି ଲାଭ କଅଁଣ!" ମୁଁ ମୁରୁକି ହସି କହିଲି ।

"ଗୋଡ଼ ଟାଣେନା କହିଦଉଛି, ମାରିବି ଗୋଟେ ନାତ! ତୁ ମତେ କହ ବୋଭୁଆର ପଢ଼ିଲେ ଫାଟିଲା ଭଳିଆ ଲାଗେ କି ନାଇଁ? ନୋମ ଚମସ୍କି ପଢ଼ିଲେ ଫାଟିଲା ଭଳିଆ ଲାଗେ କି ନାଇଁ? ଆମର ତ ଏଠି ଟୁଇଁ ନାନୀ ନାରୀବାଦୀ, ଟୁଆଁ ଦଦେଇ ବୁଦ୍ଧିଜୀବି । ଆମର ଯିଏ ଭଲ କେତେ ଭଲ ମୋତେ କହ? ପାର୍ଥକ୍ୟ ବୁଝିବାକୁ କଅଣ ଆଇନ ଷ୍ଟାଇନଙ୍କ ଆପେକ୍ଷିକ ତତ୍ତ୍ୱ ଲାଗିବ? ଆଉ ତୁ କହୁଛୁ କିଛି ଗୋଟେ ଫାଟିଫୁଟି ନ ଗଲେ ଅସୁବିଧା ନାହିଁ?" କାଳୁ ମୋତେ ଅନେଇ କହିଲା, "ଆଜିକାଲି ସାହିତ୍ୟ କୋଉଠି? ହ୍ୱାଟ୍ସଆପ ଗ୍ରୁପରେ । ସେଠି ଯେ

ହଉଛି ଆଲୋଚନା ପର୍ଯ୍ୟାଲୋଚନା । ମୋର ଗୋଟେ ଗୋଟେ କବିତା ମୁଣ୍ଡଫଟା କବିତା । ତୁ ଶୁଣିବୁ ବାୟା ହେଇଯିବୁ ।”

“ତୋ ଭ୍ରାମ୍ୟଭାଷଟା ନ ଫାଟି ଆଜି ଯାଏଁ ରହିଛି ?” ମୁଁ ପୂରା ବିସ୍ମିତ ହେଇଗଲା ଭଳି ପଚାରିଲି ।

“ଖାଇବୁ ଗୋଟେ ବ୍ରହ୍ମନାଡ ?” କାଳୁ ଗୋଡ଼ ଉଠେଇ କହିଲା, “ଯୋଉ ମୁଶ୍କିଲ କମେଣ୍ଟ ସବୁ ମିଳୁଛି, ଲେଖିବାରେ ମନଲାଗୁଛି । ତୁ ସିନା ମିଶିଲେ ଜାଣନ୍ତୁ । ନା, ଗଦାଧର ବାବୁ ?”

“ହଁ, ହଁ, ନୁହେଁ ଆଉ କଅଣ ?” ଗଦା କହିଲା ।

“ଭ୍ରାମ୍ୟଭାଷରେ ଟିକେ ବେଶି କଥା ହେଲେ କି ତାକୁ ଚାହିଁଲେ ମୋ ମୁଣ୍ଡ ଝାଇଁଝାଇଁ ହେଇଯାଉଛି । ମୋତେ ଆଉ ଭଲ ଦିଶୁନି ବି ସେଥିରେ । ଚକ୍ଷୁ ଡାକ୍ତର କହିଲେ ମୋତେ କାଳେ ଚାଳିଶିଆ ଧରିଲାଣି । ନାନା ପରୀକ୍ଷା ନିରୀକ୍ଷା କରି ପ୍ରେସକ୍ରିପ୍ସନଟେ ଧରେଇଦେଲେ । ଚଷମା ଦୋକାନୀ ମାପଚୁପ କରି ପ୍ରୋଗ୍ରେସିଭ୍ କାଚ ନାଁରେ କୋଡ଼ିଏ ହଜାର ଟଙ୍କା ଚନ୍ଦେଇକି କହିଲା – ଦୂର ଦେଖିଲା ବେଳେ ବେକ ସିଧା ଡ଼ୋଳା ଉପରକୁ, ମଝି ଦେଖିଲା ବେଳେ ବେକ ଟିକେ ଉଠେଇକି ଡ଼ୋଳା ସିଧା, ପାଖ ଦେଖିଲା ବେଳେ ବେକ ଆଉ ଡ଼ୋଳା ତଳକୁ କରିକି ଅନେଇବେ । ମାସେ କାଳ ବେକ ଉଠାପକା କରି ବେକ ବ୍ୟଥା ସାର ହେଲା । ଖାଲି ପାଖ ଭଲରେ ଦେଖିବାକୁ ପଢ଼ିବାକୁ ଆଉ ଗୋଟେ ଚଷମା କଲି । ନାକ ମଝିରେ ତାକୁ ଲଗେଇ ହାତେ ଦୂରେ ଭ୍ରାମ୍ୟଭାଷକୁ ଧରି ଦେଖିଲା ବେଳକୁ ଲାଗୁଛି ଯେମିତି ବୁଢ଼ା ହେଇଗଲି । ମୁଁ ସେ ଚଷମା ପିନ୍ଧୁନି ।”

“ତୁ ଆମର ବିରଳ ସିଙ୍ଗଲ୍ ଟୋକା! ତୁ କାହିଁକି ବୁଢ଼ା ହବୁ ?” କାଳୁ କହିଲା ।

ଗଦା ହି ହି ହେଇ ହସି କହିଲା, “ସେଠି ଆଉ ଗୋଟେ ଏଲିଜିବୁଲ୍ ସିଙ୍ଗଲ୍ ଟୋକା ବେଳାଭୂଇଁ ପ୍ରେମରେ ବାୟା!”

କାଳୁ କହିଲା, “ତୁ ସାହିତ୍ୟ ହ୍ୱାଟ୍ସଆପ ଗ୍ରୁପଗୁଡ଼ାକୁ ଆସେ । ଦିନରେ ଦଣ୍ଡେ ବୋର୍ ହବୁନି । ମୁଁ ରହ ତୋତେ ଡଜନେ ଖଣ୍ଡେ ସହ ଯୋଡ଼ି ଦେବି । ସେଠି ହିଁ ଏବେ ଅସଲ ଖେଳ ହଉଛି ।”

“ମୋର ବି ମନ ଯେ, କିଛି ନ ହେଲେ ବେଳେ ବେଳେ ସମୟ

କଟିଯାଆନ୍ତା । ସମସ୍ତେ କେମିତି ଗଦାଗଦା ଭ୍ରାମ୍ୟଭାଷରେ ଲେଖିପାରୁଛନ୍ତି, ଏତେ ସମୟ ଭ୍ରାମ୍ୟଭାଷରେ ପଢ଼ିପାରୁଛନ୍ତି, କି ଦିବ୍ୟଦୃଷ୍ଟି ସବୁ ପାଇଛନ୍ତି, ମୋର ତ ବେଳେ ବେଳେ ଈର୍ଷା ହଉଛି ।" ମୁଁ କହିଲି, "ଥରେ ରାତି ଏଗାରଟା ଖଣ୍ଡେ ହବ ଶୋଇବାକୁ ଯାଉଛି । ଦେଖିଲି ମୋ କକାପୁଅ ଭାଇ ଗୋଟେ ଫଟୁ ପଠେଇଛି । ମୋତେ ଦେଖାଗଲା ପାଛିଏ ବାଇଗଣ । ଭାବିଲି ଛାତ ବଗିଚାରେ ବୋଧେ ଲଗେଇଛି, ଅମଳ ହେଇଛି ବୋଲି ଖୁସିରେ ଫଟୁଟିଏ ପଠେଇଛି । ମୁଁ "ୱାଓ, ଏଞ୍ଜୟ ବ୍ରୋ" ଲେଖିକି ତିନିଟା ଥମ୍ସଅପ୍ ଇମୋଜି ପଠେଇଦେଲି । ବାସ୍, ମୁଁ ମୋର ଶୋଇପଡ଼ିଲି । ତା ପରଦିନ ସକାଳ ନଅଟାରେ କି ବାର୍ତ୍ତାସବୁ ଆସିଛି ହ୍ୱାଟ୍ସଆପ ଖୋଲିଲା ବେଳକୁ ଦେଖିଲି ଭାଇ ରାତି ତିନିଟାରେ ଆଉ ଗୋଟେ ବାର୍ତ୍ତା ପଠେଇଛି – "ସେଟା ଏବେ ବି ଅଛି ।" ମୁଁ ଭାବିଲି ବାଇଗଣଗୁଡ଼ା କଅଣ ମଣିଭାଇଙ୍କ ବହି ହେଇଛି ନା କଅଣ ରାତାରାତି ଉଭାନ ହେଇଯିବେ! ମନରେ ଟିକେ ସନ୍ଦେହ ହେଲା । ପରେ କମ୍ପ୍ୟୁଟର ବଡ଼ ପରଦାରେ ଦେଖିଲା ବେଳକୁ ବାଇଗଣ ନୁହେଁ, ତା ଘର ଭିତରେ ଗୁଡ଼େଇ ହେଇକି ଗୋଟେ ବିଷଧର ସାପ । ଭାଇଟା ମୋର ରାତି ସାପ ଉପରେ ଶୋଇନଥିଲା ।"

ସେତିକି ବେଳେ ପ୍ରିୟ କଣ୍ଠ ଶୁଣାଗଲା । ଆକାଶକୁ ଚାହିଁ ସେ କଅଣ ଗୁଣୁଗୁଣଉଥିଲା ।

"ପ୍ରିୟ କଅଣ କବିତା ନା ଗଜଲ ?" ଗଦା ପଚାରିଲା ।

ପ୍ରିୟର ସ୍ୱର ବର୍ତ୍ତମାନ ସ୍ପଷ୍ଟ ହେଲା:

"ଆକାଶର ନୀଳରେଖା ଗେରୁଆ ମାଟିର ନାଲ୍ ସୀମା
ଛୁଏଁ ଯେଉଁଠାରେ –
ସେଇଠାରେ—ସ୍ୱପ୍ନ ଆଉ ବାସ୍ତବର ମୁହାଣ ସେପାରେ
ଦୁହେଁ ଆମେ ହୋଇଥିଲୁ ଠିଆ,
ଆମ ପଛେ ଶୋଇଥିଲା ଦୀର୍ଘ ଦୁଇବର୍ଷର ଦୁନିଆ—
ଦୀର୍ଘ ଦୁଇବର୍ଷର ଜଗତ—
ଧୂସର ଧୂମାଳ, ଧ୍ୱନ୍ତ ଭୟଙ୍କର ପୁଣି ଯୁଦ୍ଧରତ ॥
ବହୁଦୂରେ ଲାସ୍ କଟା ଘରେ ଏକ ହାରିକେନ୍ ବତୀ
ଜଳୁଥିଲା ଦୁକୁ ଦୁକୁ, ଭୟାନକ, ଭୟାନକ ଅତି ।
ଭାଜିଗଲା ବାହାଘର ଦର୍ଶନରେ ପଢୁଥିଲା ଏମ୍ ଏ
କେଜାଣି ବା ପଡ଼ିଥିବ ଜୀବନରେ ଥରେ ଅଧେ ପ୍ରେମେ ।
ତାହା ପରେ ପିତୃହାନି ଋଣ ଭାର ପୁଣି ଗୃହ-ଭେଦ

ଦର୍ଶନର ଗ୍ରନ୍ଥେ ତାର ପକାଇଲା ଚିର ପୂର୍ଣ୍ଣଚ୍ଛେଦ ॥"

କାଳୁ ପାଳି ଧରିଲା— "ଉଣିଶ୍ ଶହ ତେୟାଳିଶ ପୁଣି
ଗୃଟି ନେଲା ଯାହା କିଛି ଥିଲା ବାକୀ; ସବୁ ଦେଖି ଶୁଣି—
ସପ୍ଲାଇରେ ନେଇଚି ଆଶ୍ରୟ
ଦରମାଟା ମନ୍ଦ ନୁହେଁ ଏଇ ତାର ଦୀର୍ଘ ପରିଚୟ ।
ଏଇ ଇତିହାସ
ପ୍ରତିମା ନାୟକ ହସେ ଓଠେ ତାର ସ୍ୱପ୍ନର ଆଭାସ ।
ମୁହଁରେ ଖାକୀର ହସ ଆଖିରେ ତା ଗତିର ଇସାରା
ଦୁଇ ପାଖେ ଦ୍ରୁତ ବନ ଗତିବାନ୍ ନକ୍ଷତ୍ରର ଧାରା ।
ଆହା! ହସୁ ହସୁ ପ୍ରତିମା ନାୟକ,
ଅଂଚଳ ତା ନାଇଁ ଦେହେ ଦେଖିଅଛି ଖାକୀର ପୋଷାକ ॥"

ମୁଁ ଆବୃତ୍ତି କଲି— "ଜାଣେ, ଜାଣେ ତୁମେ ଯାହା ହୋଇଥିଲ
ତାହା ମୋର, ନିତାନ୍ତ ନିଜର,
ଯାହା ତୁମେ ହୋଇଥାନ୍ତ
ହେଉପଛେ ମୋ ପରବର୍ତ୍ତୀର—
ତଥାପି ମୁଁ ପାଇଅଛି ଭଲ ।
ଅନୁପୂର୍ବା! ତୁମର ଓ ମୋର ପ୍ରଣୟର
ଏହାହିଁ ତ ଶେଷ ପ୍ରଶ୍ନ
ଏଇ ପୁଣି ଆଦିମ ଉତ୍ତର ॥"

"ରହ, ଏଇଟା ଶୁଣ," କାଳୁ କହିଲା—
"ଏଇ ଶାନ୍ତ, ଲଙ୍ଗଳା
ଧାନକ୍ଷେତ ମଝିରେ
ପଟା ପଟା ପିଆଜ ଓ ସୋରିଷ କିଆରି,
ଯେପରି ପୃଥିବୀର ଲକ୍ଷଲକ୍ଷ ଶୁଆ, ସାରୀ
ହୋଇଚନ୍ତି ଏଠି ଜମା,
କରିବାକୁ ବାସ୍ତବରେ
ଏକ ରଙ୍ଗୀନ ସ୍ୱପ୍ନର ତର୍ଜମା ।

ଅତି ଆଶ୍ଚର୍ଯ୍ୟ ମୂର୍ଚ୍ଛନା ଖେଳିଯାଉଛି
ନହବତରେ ।

ବୋଧହୁଏ ଏକ ଗ୍ରାମ୍ୟ ବାହାଘରର ଆସର
ଜମିଚି—
ଦିଗନ୍ତପ୍ରସାରୀ କିଆବନର
ସୀମାନ୍ତ ପାରେ ।

ତୁମରି କଥାଇ ମନେପଡିଲା—
ହଠାତ୍ ମନେପଡିଲା ।
ଆକାଶରେ ସବୁଜ ଜହ୍ନର ଭେଳା,
ଶାଳବନର ସମୁଦ୍ର ଉପରେ
ମେଞ୍ଚା ମେଞ୍ଚା ଜୁଳୁଜୁଳିଆ ପୋକଙ୍କ ମେଳା ।

ହଠାତ୍ ମନହେଲା—
ସହସ୍ର ଫାଲଗୁନ ଥିଲା ତୁମରି ଆଖିରେ,
ସହସ୍ର ଜହ୍ନର ହସ ଥିଲା ତୁମ ଓଠରେ ।
ତଥାପି ମୁଁ ଭବିଥିଲି ପିଇସାରିଚି ସବୁ ରସ
ପଡିରହିଚି ଖାଲି ଶୂନ୍ୟ କଳସ ।
ଟ୍ରପିକର ଶୁଷ୍କ ମରୁଭୂମି—
ଭବେ ଯେପରି ପିଇସାରିଚି ଦକ୍ଷିଣ ସାଗରର
ସବୁ ମୌସମୀ
ଅତି ଭୋଜନର ନିଶାରେ ।
ଆଜି କହେ ମୁଁ ନିଜକୁ ନିଜେ ଡାକି
ସବୁ ବିରାଟ ଫାଙ୍କି ।
ଦୀର୍ଘ ଯୁଗର ବିଚ୍ଛେଦ, ଅବସାଦ
ସେ କଣ କଣ ତୁମରି ପ୍ରେମର ଅନୁବାଦ?"

"ବାଃ, କାଳୁବାବୁ! ବାଃ!" ଗଦା କହିଲା ।

"ଆରେ ଏତିକିରେ କଅଣ ସରିଲା? ଏମିତି କେତେ ଗତି କବିତା ପଢ଼ାରେ ସକାଳ ହେଇଛି, କଅଁଳ ନିଶ ପାକଳ ହେଇଛି ।" କାଳୁ ମଗ୍ନ ହେଇ କହିଲା—"ଶୁଣ, ଶୁଣ ଆଗାମୀ ପୁରୁଷ!
ସୂର୍ଯ୍ୟର ଔରସୁ ଜାତ ତୁମର ଏ ଆଗ୍ନେୟ ପୌରୁଷ
ଶୁଣ, ଶୁଣ କଥା ଜଣଙ୍କର
ଶିଳାଲିପି ମୋର –

ମୁଁ "ସଚ୍ଚି ରାଉତରାୟ"
(ନୁହେଁ ଟାଗୋର ବା ଶେଲୀ)
ମୁଁ ଏଇ ମାଟିର ଧରା,
ଆଉ ଆକାଶର କବି
କାମ ନୁହଁ ମୋ ଖାଲି ଆଙ୍କିବା କାଗଜରେ ଛବି ।

ପେଶାଦାର ଗାୟକ ମୁଁ ନୁହଁ,
ତୁମେ ମୋର ଛପା ବହି ଯେତେବେଳେ ଛୁଅଁ
ଛୁଅଁ ନୂଆ ମଣିଷର ଛାତି,
ଏଇ ପୃଥିବୀର ସବୁ ମଣିଷ ଜାତି,
ତାର ପ୍ରତିଟି ଖବର
ରୂପ ପାଏ କବିତାରେ ମୋର ॥
ଖାଲି ମୋ ସମାଜ ବା ଦେଶର ନୁହେଁ,
ଆଗାମୀ ସମାଜର ହାସ୍ୟ-ଉଜ୍ଜ୍ୱଳ ମୁହଁ,
ତାର ନୂତନ ଖସଡ଼ା
ମଣିଷର ପ୍ରେମ, ଅଶ୍ରୁ, ସୁଖଦୁଃଖ
ଖାପଛଡ଼ା,
ରୂପ ପାଏ ଇସ୍ତାହାରେ ମୋର
ଷୋଳଅଣା,
ସେ ଏକ ସମ୍ବୋଧନ,
ନୁହଁ ତା ତ ତନ୍ତ୍ର, ମନ୍ତ୍ର,
ଦ୍ୱାର କିଳି ଯୋଗର ସାଧନ ।
ମଣିଷର ଲହୁ ଲୁହେ କବିତା ମୋ ନୀଳ ।
ଜୀବନର ସୁବର୍ଣ୍ଣ ଦଲିଲ ।"

ସାରାରାତି ସମୁଦ୍ର, ସୁରା ଆଉ ସଚ୍ଚି ରାଉତରା...

ମୁଁ ଭ୍ରାମ୍ୟଭାଷକୁ ଅନେଇଲି । ଗଦା କି ପ୍ରିୟର ହ୍ୱାଟ୍ସଆପରେ ଧୂସର ଟିକ୍ ତ ନୀଳ ହେଲାନି । କେଜାଣି ଆଜି ଭଳି ଦିନରେ କୋଉ ଧନ୍ଦାରେ ମାତିଛନ୍ତି । କାଲି ରାତିରେ କାଲୁ ସହ ମୋର ଗୋଟେ କାଣ୍ଡ ହେଇଯାଇଛି । ଅଗତ୍ୟା ମୁଁ କର୍ମଶାଳା ଉପରେ ମନକୁ କେନ୍ଦ୍ରିତ କଲି । କିଛି ସାହିତ୍ୟିକ ଦଳ ଦଳ ହେଇ ଏଣେ ତେଣେ ବୁଲୁଥିଲେ । ସାନୁର ବାପା ଦେଖା ଯାଉନଥିଲେ ।

"କାକୁ, ବାପା କୁଆଡ଼େ ଗଲେ?" ସାନୁ ପଚାରିଲା।

"ଏଇଠି ପାଖରେ କୋଉଠି ଥିବେ। ଡରମାଡୁଛି କି?"

"ମୋତେ ଡର ମାଡ଼େନି। ଆପଣ ଆଗରୁ ନନ୍ଦନକାନନ ଆସିଛନ୍ତି?"

"ହଁ, କେତେଥର ଆସିଛି। ତୁମେ ଆଗରୁ ଆସିନ କି?"

"ହଁ, ମୁଁ ବି କେତେଥର ଆସିଛି। ମୋତେ ନାଁ ଚଢ଼େଇ ସବୁଠୁ ବେଶି ଭଲ ଲାଗେ।"

"ସାନୁକୁ ତାହେଲେ ଚଢ଼େଇ ଦେଖିବାକୁ ଭଲଲାଗେ?"

"ହଁ, ଚାଲନ୍ତୁ ଆମେ ଚଢ଼େଇ ଯୋଉପଟେ ଅଛନ୍ତି ସେପଟକୁ ଯିବା।"

"ଏବେ ନୁହେଁ, ଅନ୍ୟମାନେ ଆସନ୍ତୁ। ସମସ୍ତେ ମିଶିକି ଯିବା।"

"ମୁଁ ନାଁ ଚଢ଼େଇଟେ ହେଲେ କେତେ ଭଲ ହୁଅନ୍ତା। ଯୁଆଡ଼େ ମନ ସିଆଡ଼େ ଉଡ଼ିବୁଲନ୍ତି।" ସାନୁ ଯ୍ୟା କହି ହାତକୁ ଡ଼େଣା ଭଳି ଏପଟ ସେପଟ ହଲେଇଲା।

ଏଠିକି ଆସିବା ପ୍ରାୟ ଦୁଇଘଣ୍ଟା ଖଣ୍ଡେ ହେଲାଣି ହେଲେ ଗୁପ୍ତ ଏଜେଣ୍ଡାଟା କିଛି ଜଣାପଡୁନି। ଆମ ଖାସ୍ ଖବରୀମାନେ ବି କାଇଁ ଦିଶୁନାହାନ୍ତି। କାହାକୁ ପଚାରିବି? ଆସିବାଟା ବୃଥା ହେଲାନି ତ?

"କଅଣ ଖବର ଆମ ବାବୁଙ୍କର?" ବାଣୀ ଅପା ଆସି ମୋ କାନ୍ଧରେ ହାତ ପକେଇଲେ। ସେ ଶାନ୍ତଶିଷ୍ଟଙ୍କର ବି ଅପା, ଲାଙ୍ଗୁଡବିଶିଷ୍ଟଙ୍କର ବି ଅପା – ଆମ ଆଦରର ବାଣୀ ଅପା, ଯାହାଙ୍କ କଥା ଆଗରୁ କହୁଥିଲି।

"ଅପା, ଆଜିର ଭିତିରି ଏଜେଣ୍ଡାଟା କଅଣ ଜାଣନ୍ତି?"

"ଭିତିରି ଏଜେଣ୍ଡା ପୁଣି ଗୋଟେ କଅଣ? ମୁଁ ତ ଜାଣିନି। ତୁମର କାହିଁକି ଏତେ କର୍ଣ୍ଣକଣ୍ଟୁ ହଉଛି? ବୁଲାବୁଲି କରିବା। ଦୁଃଖସୁଖ ହେବା। ଚିନ୍ତାଭାବନା କରିବା। ଏୟା ତ ମୋତେ ଉଦୟଭାଇ କହିଲା। ଇଏ ଆମ ଝିଅ ଆସିଛି କି?" ବାଣୀ ଅପା ସାନୁକୁ ଆଗରୁ ଚିହ୍ନିଥିବା ଭଳି ମନେହେଲା।

"ସାନୁ, ଅପାଙ୍କ ସାଙ୍ଗରେ ବୁଲିବ ଯାଅ।"

"ଆସ, ସାନୁ ଆମର ସୁନା ଝିଅ!" ବାଣୀ ଅପା ସାନୁକୁ ଗେଲ କରିଦେଲେ।

"ସାନୁ ସୁନା ଝିଅ ନା ଚଗଲି ଝିଅ?" ମୁଁ ପଚାରିଲି ।

"ବହୁଉଉଉଉଉତ ସୁନା ଆଉ ଟିକେ ଚଗଲି," କହିକି ସାନୁ ବାଣୀ ଅପାଙ୍କ ହାତ ଧରି ଡେଇଁ ଡେଇଁକା ଗଲା । ବାଣୀ ଅପା ଲେଖିକାମାନଙ୍କ ଭିଡ଼ ଆଡ଼କୁ ମୁହେଁଇଲେ ।

ମୁଁ ଦେଖିଲି ଟିକେ ଦୂରରେ ଭବତୋଷ ପରିଡ଼ା ଆଉ ମୋହନ କର ଠିଆ ହେଇ ଗପୁଥିଲେ । ଭବତୋଷ ବାବୁଙ୍କୁ ସତୁରି ଉପରେ ଆଉ ମୋହନ ବାବୁଙ୍କୁ ଷାଠିଏ, ହେଲେ ଦୁହିଁଙ୍କ ବୟସ ଜଣାପଡ଼େନି । ଆଖି ପଡ଼ିବାରୁ ମୋହନ ବାବୁ ହାତ ହଲେଇ ଡ଼ାକିଲେ । ମୁଁ ସେମାନଙ୍କ ପାଖକୁ ଗଲି । ଭବତୋଷ ବାବୁ ବିଗ୍ରରକମାନଙ୍କ ଦ୍ୱାରା ଏଯାବତ୍ ଉପେକ୍ଷିତ ଅନନ୍ୟ କବିମାନଙ୍କ ମଧ୍ୟରୁ ଅନ୍ୟତମ ।

"ଆଜିର ଏଜେଣ୍ଡା କିଛି ଜଣାପଡୁନି ।" ମୁଁ କହିଲି ।

"ଟିକେ ଧୈର୍ଯ୍ୟ ଧର । ଏମିତି ବ୍ୟସ୍ତ କାହିଁକି ହଉଛ," ଭବତୋଷ ବାବୁ କହିଲେ, "ହେଇ ନଳିନୀ ବାବୁ ଆସିଲେଣି ।"

"ମୋର ଟିକେ ଡ଼େରି ହେଇଗଲା," ନଳିନୀ ବାବୁ ପକେଟରୁ ରୁମାଲ କାଢ଼ି ମୁହଁରୁ ଝାଳ ପୋଛୁ ପୋଛୁ କହିଲେ, "ମୋର ମାଆ ଶଯ୍ୟାଶାୟୀ । ତାଙ୍କର କାମ ସାରି ବାହାରିଲା ବେଳକୁ ଡ଼େରି ହେଇଗଲା । ପୁଣି ସାମନ୍ତରାପୁର ଛକ ପାଖରୁ ନନ୍ଦନକାନନ ଏମୁଣ୍ଡରୁ ସେମୁଣ୍ଡ ।"

ନଳିନୀ ବାବୁ ବହିପ୍ରିୟ, ସାହିତ୍ୟାନୁରାଗୀ; ତେଣୁ ଅନେକ ପୁରୁଣାନୂଆ ସାହିତ୍ୟିକଙ୍କ ସହ ବନ୍ଧୁତା । କଥାକହିବା ବେଳେ ଅତ୍ୟନ୍ତ ମାର୍ଜିତ । ସେ ଲେଖାଟିଏ ପଢ଼ି ଫୋନ କରି ନିଜ ମତାମତ ଦେଇ ଆମକୁ ବେଳେ ବେଳେ ସୁପରଷ୍ଟାର ରଜନୀକାନ୍ତ ଫିଲିଙ୍ଗ୍ସ ଦିଅନ୍ତି । ନ ହେଲେ ଏ ରାଇଜରେ ସାହିତ୍ୟିକଙ୍କୁ ବାଟରେ ଘାଟରେ କିଏ ଚିହ୍ନେ ଯେ? ଆଉ ସେଇଥି ପାଇଁ ବୋଧେ ଆମେ ସାହିତ୍ୟିକମାନେ ନିଜ ନିଜ ଗୋଷ୍ଠୀ ଗଢ଼ି ଗୋଡ଼ ଟଣାଟଣି ଆଉ ପରସ୍ପରକୁ ରାମ୍ପୁଡ଼ିକାମୁଡ଼ି ସେଲିବ୍ରିଟି ଭଳିଆ ଉଲ୍ଲସିତ ହଉ ।

"ଆପଣଙ୍କ ମୁଖପୁସ୍ତିକା ଲେଖାସବୁ ମୁଁ ପଢୁଛି ।" ନଳିନୀ ବାବୁ ମୋହନ ବାବୁଙ୍କୁ କହିଲେ, "ଆପଣ ନିଡର ହେଇକି ଲେଖୁଛନ୍ତି କେମିତି? ଆପଣଙ୍କୁ ଧମକଫମକ ଆସୁନି ତ?"

"ନାଁ, ନାଁ । ଗୃହିରିରେ ଥିଲା ବେଳେ ତ ଡ଼ରୁ ନଥିଲି । ଏବେ କାହିଁକି ଡ଼ରିବି ?"

ମୋହନ ବାବୁ ଦକ୍ଷିଣପନ୍ଥୀ ଚିନ୍ତାଧାରା ବିରୋଧୀ । ତେଣୁ ଶାଣିତ ବ୍ୟଙ୍ଗ ଧାଡ଼ିଏ ଦି ଧାଡ଼ି ନିୟମିତ ମୁଖପୁସ୍ତିକାରେ ଛାଡ଼ିଦିଅନ୍ତି ।

ଆମେ ଗୃରିଜଣ ଠିଆ ହେଇ ପୂଜା ପତ୍ରିକା ବିଷୟରେ ଗପସପ କଲୁ । ମୁଁ ଯିବି ଯିବି ହେଇ ନାରାୟଣୀ ଯାଇପାରିନଥିଲି । ସେ ତିନି ଜଣ କୋଉ ପତ୍ରିକା କେମିତି ହେଇଛି କହିଲେ । ବାବୁଲି ଭାଇଙ୍କ ନାରାୟଣୀ ଗୋଟେ ପେଣ୍ଠସ୍ଥଳୀ । ତା ନିକଟରେ ଆମ ସାହିତ୍ୟ-ମୁକ୍ତିମଣ୍ଡପ । ସେଠି ରୀତିମତ ସାହିତ୍ୟ ଫାହିତ୍ୟ ଆଲୋଚନା ହୁଏ; କିଏ କଅଣ କଲା, କିଏ କଅଣ ନ କଲା ଆଦି ପାପପୁଣ୍ୟର ବିଗ୍ଭର ହୁଏ । ମହାମହିମ ଚିତ୍ରଗୁପ୍ତ ପାଞ୍ଜି ଗାରେଇଲା ବେଳେ ଯେସବୁକୁ ରେଫର କରନ୍ତି । କିନ୍ତୁ ତାଠୁଁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ବାବୁଲି ଭାଇଙ୍କ ଛୋଟିଆ ବହି ଦୋକାନଟେ, ହେଲେ ସେ କେବେ କୋଉ ଲେଖକର ବହି ରଖିବାକୁ ମନା କରନ୍ତିନି, ଜାଗା ନାହିଁ ବୋଲି କହି ଫେରେଇ ଦିଅନ୍ତିନି ।

ଏବେ ସମ୍ବଲପୁରୀ ଜାମା ପରିହିତ ସମାଲୋଚକ ସଞ୍ଜୟଶ୍ରୀ ଦୃଶ୍ୟମାନ ହେଲେ । ସେ କିଏ କାହା ସହ ଠିଆହେଇଛି, କାହାର କାହା ସହ କି ସମୀକରଣ ପରଖିବାକୁ ୟାକୁ ତାକୁ ଅନଉଥାଆନ୍ତି । ଆଜିକାଲି ଆମ ସାହିତ୍ୟିକମାନେ ଫୁସୁରୁଫୁସୁରୁ ହଉଛନ୍ତି - ଆଗରୁ ଯଦି ପାଞ୍ଚ କି ଛଅ ନମ୍ବର ରଖିବାବାଲା ଆଠ ନଅକୁ ଟପି ଯାଉଥିଲା ଆମର ବାବୁ ସଞ୍ଜୟଶ୍ରୀ ମହାଭାରତ ଠିଆ କରି ଦେଉଥିଲେ । ଆଉ ଏବେ ଦୁଇ ତିନି ନମ୍ବର ଆଠ ନଅକୁ ଟପିଯାଉଛନ୍ତି ଅଥଚ ବାବୁ ସଞ୍ଜୟଶ୍ରୀ ଚୁପ୍ । ଉଁ ନାହିଁ କି ଚୁଁ ନାହିଁ, ଯେ କି କଥା ? ହେଲେ ଗଣକ୍ଷେତ୍ରରେ ରହି ମୁଁ ଅଗଣତାନ୍ତ୍ରିକ ବୋଲି ଚିହ୍ନା ପଡ଼ିବାକୁ ଗୃହୁଁନି । ସ୍ୱାଧୀନତା ବୋଲି କିଛି ଗୋଟେ ଅଛି ନା ନାହିଁ? ଜଣେ ଇଚ୍ଛା ହେଲେ ନିଜର ମତ ଦେବ, ଇଚ୍ଛା ନ ହେଲେ ନାହିଁ । ତାଙ୍କ ସହ ମଇଦାନରେ ନାମୀଦାମୀ ପୁରସ୍କୃତ ବହି ସବୁକୁ ଧାଡ଼ି ଧାଡ଼ି ପଢ଼ି ବାଖ୍ୟା କରିବା ମୋର ଗୋଟେ ଦିବାସ୍ୱପ୍ନ ।

"ଗୃଲ ଗୋଟେ ଗୋଟେ ଆଗେଇବା । ଯୋଗକୁ ଆଜି ପାଗଟା ବଢ଼ିଆ ହେଇଛି ।" ମୋହନ ବାବୁ କହିଲେ ।

ଆମେ ଆଗକୁ ବଢ଼ିଲୁ । ମୋ ଦୃଷ୍ଟି ସୁକନ୍ୟା ଦେବୀଙ୍କ ଉପରେ ପଡ଼ିଲା । ସେ  ତାରବାଡ଼ ଘେରା ଭିତରେ ଠିଆ ହେଇଥିବା ଗୋଟେ ବଣମଣିଷ ସହ

ସେଲଫି ନେଉ ନେଉ ଅନାମ ଦାସଙ୍କୁ କହିଲେ, "ଶ୍ୟାରରର୍, ଆମ ପୂର୍ବଜ! ଆପଣ ବି ଆସନ୍ତୁନା ।"

ଅନାମ ଦାସ ଜଣେ ଜେନ୍ ମଙ୍କ ଭଳି ହସିଲେ । କେବଳ ଦେବୀ ସୁକନ୍ୟା କାହିଁକି ବେଶ୍ କିଛି ନବପ୍ରତିଭ ପ୍ରବୀଣମାନଙ୍କୁ ସାଥି କରି ହାତୀ, ଭାଲୁ, ବାଘ, ସିଂହ, ଜଳହସ୍ତୀ, କଟାଶ ଆଦି ସହ ସେଲଫି ଉଠାଇବାକୁ ବ୍ୟସ୍ତ ହେଇପଡ଼ିଲେ ।

"ଆପଣ ଲକ୍ଷ୍ୟ କରୁଛନ୍ତି ଆମ ଆଜ୍ଞାମାନେ କେମିତି ଅସ୍ଥିର ଦିଶୁଛନ୍ତି? ଏତେ ଶ୍ରୋତା ଅଥଚ ମଞ୍ଚ ନାହିଁ । ଭାଷଣ ପ୍ରବଚନ ଦେଇପାରୁନାହାନ୍ତି । ଜଳ ବିନା ମାଛ ଭଳି ବିକଳ ହଉଛନ୍ତି ।" ମୁଁ କହିଲି ।

ଭବତୋଷ ବାବୁ ମୋତେ ଗୃହିଁ ହସିଲେ, କିଛି କହିଲେନି ।

ଏମିତି ଗ୍ଲୁଲୁ ଗ୍ଲୁଲୁ ଆମେ ଯାଇକି କୁମ୍ଭୀର ଥିବା ଜାଗାରେ ପହଞ୍ଚିଲୁ ।

ସେଠି ଅନେକ ନୂଆପୁରୁଣା ସାହିତ୍ୟିକ ଠୁଳ ହେଇଥିଲେ । ନବେ ପାଖଉଥିବା ଆମ ଅନଙ୍ଗଭୀମ ଗୁରୁ କୁମ୍ଭୀରଗୁଡ଼ାଙ୍କୁ ଏକଲୟରେ ଦେଖୁଥାଆନ୍ତି । ଅନଙ୍ଗ ଗୁରୁ ଡଜନେ ଖଣ୍ଡେ ଅନୁଷ୍ଠାନ, କାର୍ଯ୍ୟନିବାହୀ ସମିତିର ସଭାପତି । ତାଙ୍କର ଅଦୃଶ୍ୟ ଶିଂଘ ମଇଁଷିର ଶିଂଘ, ତାଙ୍କର ଅଦୃଶ୍ୟ ଲାଞ୍ଜ ହନୁମନ୍ତଙ୍କ ଲାଞ୍ଜ, ଯାହା ବିପକ୍ଷର ଲଙ୍କା ମୂହୁର୍ତ୍ତକରେ ଜାଳି ଦେଇପାରେ ।

ଥରେ ଗୋଟେ ଅଗ୍ରଣୀ ଅନୁଷ୍ଠାନର ସଭାପତିତ୍ୱରୁ ତାଙ୍କର କାର୍ଯ୍ୟକାଳ ଶେଷ ପରେ ଜଣେ ପ୍ରକାଶକ ମୋତେ କହିଲେ –"ଜାଣ, ତାଙ୍କ ଘରକୁ ସକାଳେ ସନ୍ଧ୍ୟାରେ ଆଗରୁ ପାଖାପାଖି କୋଡ଼ିଏ ଲୋକ ଯାଉଥିଲେ । ତାଙ୍କ ଲେଖାର ଭୂରିଭୂରି ପ୍ରଶଂସାରେ ଆଖପାଖ ପ୍ରକମ୍ପିତ ହେଉଥିଲା । ଏବେ ଜଣେ ହେଲେ କେହି ଯାଉନାହାନ୍ତି ।"

"ଆପଣ ସେଠି ଠିଆ ହେଇକି ଦେଖୁଥିଲେ, ଆଗରୁ କେତେ ଲୋକେ ଯାଉଥିଲେ, ଏବେ କେତେ ଲୋକ ଯାଉଛନ୍ତି?" ମୁଁ ପଚ୍ଚରିଲି ।

"ଓଃ, ତୁମେ ବି ନା! ଖବର ଦେବାକୁ ଆମର ଲୋକ ନାହାନ୍ତି? ଯୋଉମାନେ ସେଠିକି ଯାଉଥିଲେ ସେମାନେ ଏବେ ନୂଆ ସଭାପତିଙ୍କ ଘରେ ଜୟଜୟକାର କରୁଛନ୍ତି ।" ପ୍ରକାଶକ ହସି ହସି କହିଲେ ।

ବର୍ତ୍ତମାନ ଅନଙ୍ଗ ଗୁରୁ ଉଦ୍‌ବୋଧନ ଦେଲା ଭଳି କହିଲେ, "ମୋତେ

ଯେତେବେଳେ ବାଇଶ ବର୍ଷ ହେଇଥିଲା ଆମ ଗାଁ ନଈବଢ଼ିରେ କୁମ୍ଭୀର ଆସିଥିଲେ । ବିଶାଳକାୟ କୁମ୍ଭୀର, ସେମିତିକା କୁମ୍ଭୀର ଆଉ ଦେଖାଯାଉନାହାନ୍ତି । ମୁଁ ଦେଖିଛି ଏକା ସେମିତିକା କୁମ୍ଭୀର । କୁମ୍ଭୀର କାନ୍ଦଣା କଅଣ ବାବୁମାନେ ତୁମେ ଜାଣ? ତୁମେମାନେ ସବୁ ଆଜିକାଲିକା ପିଲା । କଅଣ ଜାଣିବ କୁମ୍ଭୀର କାନ୍ଦଣା । ଅସଲ କୁମ୍ଭୀରର କରାମତି ଦେଖିଥିଲେ ସିନା ଲେଖିବ । ମୋ ଲେଖାରେ ଅଛି ପ୍ରତ୍ୟକ୍ଷାନୁଭୂତି, ଗଭୀର ଅନୁଶୀଳନ । ସେଥିପାଇଁ ମୋ ଲେଖାର ଅନ୍ତଃସ୍ୱର ମାର୍ମିକ । ଆଜିକାଲିର ନୂଆପିଢ଼ି କିଛି ପଢ଼ିବେନି, କିଛି ଦେଖିବେନି । ଏମିତି ଚିଡ଼ିଆଖାନାରେ କୁମ୍ଭୀର ଦେଖିକି କଅଣ ଲେଖା ଲେଖିବେ? ଓଡ଼ିଆ ସାହିତ୍ୟର ଭବିଷ୍ୟତ କଅଣ? ସମସ୍ତେ ତ ମୋବାଇଲରେ ମାତିଲେ । ସାମାଜିକ ମାଧ୍ୟମ ଘାଣ୍ଟିଲେ । ସେଥିରେ ପୁଣି ଆଜିକାଲି କାଳେ ଗପ ଉପନ୍ୟାସ ବି ଲେଖାଯାଉଛି । ଆମ ସାହିତ୍ୟ ଆଉ ସାହିତ୍ୟ ନାହିଁ । ଆଉ ସେ ସମୟ ନାହିଁ ।"

"ହଁ ସାର୍, ଆପଣ ଏକଦମ୍ ସତକଥା କହୁଛନ୍ତି ।" ପଞ୍ଚଜନ୍ୟ ବାବୁ କହିଲେ, "ମୋ ପୁଅ ସିଲିକନ୍ ଭ୍ୟାଲିରେ ରହୁଛି ।"

"ହଁ କି? ମୋ ବଡ଼ ଜୋଇଁ ବି ସେଠି ରହୁଛି । ମାସକୁ ଜାଣ କେତେ ଟଙ୍କା ଦରମା? ତିରିଶ ଲକ୍ଷ ।"

"ସାର୍, ମୋ ନାତିଟା ନା ଗୋଟେ ଜିନିଅସ୍! ମାତ୍ର ସାତ ବର୍ଷ, ହେଲେ କି କ୍ରିଏଟିଭିଟି! ସେଠିକା ଚିଡ଼ିଆଖାନା ବୁଲି ଯାଇଥିଲା । ଗୋଟେ କୁମ୍ଭୀର ଯେମିତି ଦେଖିଛି କହିଲା – କ୍ରୋକୋଡାଇଲ୍, କ୍ରୋକୋଡାଇଲ୍, ହ୍ୱାଇ ଆର୍ ୟୁ କ୍ରାଇଙ୍ଗ୍?"

"ହଁ, ତାହେଲେ ତା ଜେଜେ ଅଣି ଆଣିଛି ।"

"ଆପଣଙ୍କ ଆଶୀର୍ବାଦ, ସାର୍!"

ଅନଙ୍ଗ ଗୁରୁ "କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟଗତି ନାହିଁ" ଠାଣିରେ ହସି କହିଲେ, "ସେଠିକାର ପାଣିପବନ ହିଁ ଅଲଗା । ମୋ ନାତିଟା କି ବ୍ରିଲିଆଣ୍ଟ! କମ୍ପାନୀ ଗୁଡ଼ା ତା ଘର ଆଗରେ ଧାଡ଼ି ବାନ୍ଧି ଠିଆ ହଉଛନ୍ତି । ଇଏ କହୁଛି ଆସ ଆମ କମ୍ପାନୀରେ କାମ କର । ସିଏ ଡ଼ାକୁଛି ଆସ ଆମ ସହ କାମ କର ।"

"ସାର୍, ଆପଣଙ୍କ କୁମ୍ଭୀର ଉପନ୍ୟାସ ଦ୍ୱାରା ଅନୁପ୍ରେରିତ ହେଇ ମୁଁ ବି କୁମ୍ଭୀର ଉପରେ ଗୋଟେ ଅଣୁଗପ ଲେଖିଛି । ମୁଁ ଆପଣଙ୍କ ଉପନ୍ୟାସ ଯେତେବେଳେ ପଢ଼ିଥିଲି ଚିନ୍ତା କରିକି ବିସ୍ମିତ ହେଇଥିଲି ଆପଣ କେମିତି ଏମିତି

ଗୋଟେ ଉପନ୍ୟାସର ପରିକଳ୍ପନା କରିପାରିଲେ ।” ମୁଁ ଚିହ୍ନି ନଥିବା ଜଣେ ଯୁବଲେଖକ କହିଲା ।

ଅନଙ୍ଗ ଗୁରୁ ଏଥର ପରମ ପିତା ବ୍ରହ୍ମାଙ୍କ ଭଳି ହସି କହିଲେ, “ମୁଁ ଲେଖିଲା ବେଳେ ଗୋଟେ ଅନ୍ୟ ମଣିଷ ପାଲଟିଯାଏ । ସେତେବେଳେ ମୁଁ ସୃଷ୍ଟିକର୍ତ୍ତା । ମୋର ସୃଷ୍ଟି ହିଁ ସତ୍ୟ । ମୋର ଶବ୍ଦ ହିଁ ବ୍ରହ୍ମ ।”

ତାଙ୍କୁ ଘେରିଥିବା ତାଙ୍କର ଅନୁଗାମୀମାନେ ତାଙ୍କୁ ଭକ୍ତିପୂର୍ଣ୍ଣ ନୟନରେ ଚାହିଁ ରହିଲେ । ଅନଙ୍ଗ ଗୁରୁ ନିଜର ସୃଜନ ରହସ୍ୟ ବିଗଟ ପାଟି କରି ଗପି ଚାଲିଲେ । ସଭାସମିତିରେ ଘଣ୍ଟେରୁ କମ୍ କହିବା ଅଭ୍ୟାସ ତାଙ୍କର କେବେ ବି ନଥିଲା ।  ତାଙ୍କର ଆଉ ତାଙ୍କୁ ଘେରିଥିବା ଦଳର ଆଚରଣ ଦେଖି ମତେ କ୍ଳାନ୍ତି ଆସିଲା । ଆମର ଆତ୍ମସମ୍ମାନବୋଧ କଣ ବୟଃସନ୍ଧିରେ ଅଟକିଯାଇଛି ? ଆମକୁ କଣ ବାରମ୍ବାର ବୟଃସନ୍ଧି ଘାରୁଛି ?

“କଅଣ ଦେଖୁଛ ?” ଏତେବେଳେକେ ମୁଖ୍ୟ ଆୟୋଜକ ଭାଇ ଉଦୟଭାନୁଙ୍କର ଦେଖା ମିଳିଲା; ପଛରୁ ଆସି ଏକବାରେ ଚମକେଇ ଦେଲେ ।

“ଭାଇ, ସାହିତ୍ୟର ସ୍ଖଳଛବି !” ମୁଁ କହିଲି ।

“ତୁମର ଯୋଉ କଥା!” ଭାଇ ହସି ହସି କହିଲେ, “ହ୍ରଦ ପାଖରେ ଅରୁଆଭାତ, ଡାଲମା, ଆମ୍ବୁଲ ଖଟା ପ୍ରସ୍ତୁତ । ଆଉ ପାହାଳ ତିରିଶ ଟଙ୍କିଆ ରସଗୋଲା ଯାହାକୁ ଯେତେ!”

“ଅଧେ ତ ମଧୁମେହରେ ପୀଡ଼ିତ, ଇନସୁଲିନ ପକେଟରେ ଧରି ବୁଲୁଛନ୍ତି । ଦେଖୁନାହାନ୍ତି କେମିତି ବାରମ୍ବାର ପରିଶ୍ରାଗାର ଖୋଜାପଡୁଛି ? ତିରିଶ ଟଙ୍କିଆ ରସଗୋଲା ଖୁଏଇକି ମାରିବ ? ଏଇ ତୁମର ଯୋଜନା ?”

“ୟାଙ୍କୁ ଟିକେ ସମ୍ଭାଳନ୍ତୁ ।” ଭବତୋଷ ବାବୁ ଓ ମୋହନ ବାବୁଙ୍କୁ କୃତ୍ରିମ ମିନତି କରି ଉଦୟଭାନୁ ଭାଇ ଅନ୍ୟମାନଙ୍କୁ ଖାଇବା ପ୍ରସ୍ତୁତ ହେଲାଣି ବୋଲି କହିବାକୁ ଆଗେଇଲେ ।

ମୁଁ ପକେଟରୁ ଭ୍ରାମ୍ୟଭାଷ କାଢ଼ି ସମୟ ଦେଖିଲି । ଗୋଟେ ବାଜିଲାଣି । ପ୍ରିୟ ଲେଖିଛି ସେ କାମରେ କୋଲକାତା ଯାଇଛି । ଗଦା ଜଣେଇଛି ସେ ମାମୁଁପୁଅ ଭାଇ ବରଯାତ୍ରୀରେ ସମ୍ବଲପୁର ଯାଇଛି । ଏଠି ଅରୁଆଭାତ ଡାଲମା ସାଙ୍ଗକୁ ଯୋଉ ପ୍ରବଚନ ଶୁଣିବାକୁ ମିଳିବ ତା ଅପେକ୍ଷା ମୁଁ ବରଂ ଡବଲ ଡୋଜ

ବିରିଆନି ପକେଇ ଦେଇ ଆସିବା ଶ୍ରେୟସ୍କର ଭାବିଲି ଆଉ "ହେଇ ଆସୁଛି" କହି ଚିଡ଼ିଆଖାନା ଫାଟକ ଆଡ଼େ ମୁହାଁଇଲି ।

"ଆସ, ଆସ । ତୁମେ ନ ଆସିଥିଲେ ମନ ଖରାପ ହେଇଥାଆନ୍ତା," ମୋତେ ଦେଖି ହବିବ ଭାଇ କହିଲେ ।

"ଦିଅ, ଦିଅ, କର୍ମଶାଳା ଅଧାରୁ ଛାଡ଼ିକି ଆସିଛି ।" ମୁଁ ଧୂଆଁଘର ତାଲା ପଡ଼ିଥିବା ଦେଖିଲି ।

ହବିବ ଭାଇ ଗୋଟେ ଖଲିପତ୍ରରେ ଥାଳିଏ ଦେଶୀ କୁକୁଡ଼ା ବିରିଆନି ମଝିରେ ଗୋଟେ ଷ୍ଟଫ୍ଡ ଆଳୁ ବାଢ଼ିଲା; ଆଉ ଗୋଟେ ଠୋଲାରେ ଦହିକାକୁଡ଼ି ରାଇତା ପରଷି ଦେଲା । ମୁଁ ପ୍ରଥମେ ତାର ମହକକୁ ତିନିଟା ଲମ୍ବା ନିଶ୍ୱାସ ମାରି ପେଟ ଭିତରକୁ ଟାଣି ନେଲି । ମାଂସ ଖଣ୍ଡଟେରେ ଦାନ୍ତ ଲଗଉ ଲଗଉ ଜିହ୍ୱାରେ ଅପୂର୍ବ ସ୍ୱାଦର ଅନୁଭବ ଦେଇ ତା ଯେମିତି ପାଟି ଭିତରେ ମିଳେଇଗଲା ।

"କାଲୁ କେତେବେଳେ ଉଠିଲା? କଅଣ କହୁଥିଲା?" ମୁଁ ଗୁଣ୍ଡେ ବିରିଆନି ପାଟିକୁ ନେଇ ପଚାରିଲି ।

"ବାରଟା ଖଣ୍ଡେ ବେଳକୁ । ଚାହା ପିଇଲା ବେଳେ ତାଙ୍କ ଭାଷାରେ ତୁମକୁ କଅଣ ସବୁ କହୁଥିଲେ ବା ।"

"ରକ୍ଷା! ଆଜି ରାତିରେ ଆସିବ କହୁଥିଲା?"

"ନାଇଁ, ଆଜି ଆସିବେନି । ଘର ପାଇଁ ଆଉ ପଡ଼ୋଶୀ ଘର ପାଇଁ ଛଅ ଥାଳି ବିରିଆନି ନେଇକି ଯାଇଛନ୍ତି । ହିସାବଟା ତମ ଖାତାରେ ଲେଖିଦେବାକୁ କହିଛନ୍ତି ।"

"କାଲୁ ରେ କାଲୁ!"

କାଲିରାତିରେ କାଲୁର ମୋର ବହୁତ ରାତି ଯାଏ ପିଆପିଇ କଲୁ, କଳାସାହିତ୍ୟ ଚର୍ଚ୍ଚା କରିକି ପୂରା ଛିନିଛତ୍ର କଲୁ ।

କାଲୁ ବହିଥାକରୁ ଖୋଜି ମାଟିଆ ଚିରି ଫର୍ଦ୍ଦ ଫର୍ଦ୍ଦ ହେଇଯାଇଥିବା ବହିଟେ କାଢ଼ିଲା – "କବିତା, ୧୯୬୯" । ସେ ବହି ଖୋଲିଲା, ଯୋଉ ପୃଷ୍ଠା ବାହାରିଲା ସେଇଠୁ ପଢ଼ିବାକୁ ଆରମ୍ଭ କଲା — "ଶବ୍ଦସବୁ ଅର୍ଥର ଇଲାକା ଭିତରେ ନିରୀହ ଗାଈଟିମାନ ଭଳି ଚରୁଛନ୍ତି । ଅର୍ଥମାନେ ଚଢ଼େଇଙ୍କ ପରି ଏଣେତେଣେ

ଉଡ଼ି କିଚିରି ମିଚିରି କରୁନାହାନ୍ତି । ସେମାନେ ବରଂ ପୋକ ପରି ଏକ ନିର୍ଦ୍ଦିଷ୍ଟ ଆଲୁଅ ଗୃରିପଟେ ଘୂରୁଛନ୍ତି ।

ତଥାପି କି ଶୂନ୍ୟତା!
କି ଭୀଷଣ!
ମସ୍ତ ଗୋଟାଏ "ନାଇଁ" ।
ନାଇଁର ଘଟାଟୋପ ।
ହଁ ଯେପରି ଏକ କ୍ଷୀଣ ଗଜହଂସ ।
ନାଇଁ ହିଁ ଆକାଶ ।
କି ଭୀଷଣ! କି ଭୀଷଣ!
ପ୍ରଶ୍ନ ଉଠେ : ରିକ୍ସାବାଲା କଣ ଏ କବିତା ବୁଝିପାରିବ ?
କିଏ ବୁଝିଥିଲା ?

ନେତା, ମନ୍ତ୍ରୀ, ଜଜ୍, କୁଳପତି, ଦାନବୀର, ଦେଶପ୍ରାଣ, ପ୍ରେମପାତ୍ରୀ — ଯେଉଁମାନଙ୍କୁ ଅଜସ୍ର କବିତା ଅର୍ପଣ କରାଯାଇଚି, ସେମାନେ କଣ ବୁଝିଥିଲେ ?"

କାଲୁ ସେ ବହିରୁ କବିତା ପଢ଼ିଲା — "ଅଭିଃ ମନ୍ତ୍ରେ ଧୂଆ ଏକ ଭୋରର ଶିଶିରେ–
ଗ୍ରାମର ସୀମାରେ, କେଉଁ ଶ୍ୱେତ କବରରେ
(ବଢ଼ିଆ ମୃତ୍ୟୁର ଚିହ୍ନ ଯାହା)
ଏକ ଗାଈଜଗା ପିଲା ଅବା କେଉଁ ଫାଁକିଦିଆ ଛାତ୍ର
ଲେଖିଅଛି ଜୁଇର ଅଙ୍ଗାରେ
ଅଶ୍ଳୀଳ ଯୋନିର ନାମ ।
(ଗାଉଁଲୀ ଭାଷାରେ) ।
ଆଉ ଆଙ୍କିଛି
ପ୍ରକୃତିର ଆଚ୍ଛାଦିତ ଦୁଇଟି ଅଙ୍ଗର
ଉଲଗ୍ନ ମିଥୁନ ଚିତ୍ର,
ନିବିଡ଼ ସଙ୍ଗମ
ତେଣେ ଦ୍ରୌପଦୀର ମିହୀନ୍ ଶାଢ଼ୀର
ଗୋଟିଏ ପ୍ରସ୍ତ ଖୋଲେ ॥

କିନ୍ତୁ ଖୋଲେ ନାଇ ।
ମୃତ୍ୟୁ ଛଡ଼ା ଯୌନତାରେ ପୂର୍ଣ୍ଣତା ଯେ ନାଇ ।

ମୃତ୍ୟୁ ଓ ମୈଥୁନ ଯେପରି ହାତ ଧରାଧରି ହୋଇ
ଗ୍ଭଲିଛନ୍ତି ଅନାଦି କାଳରୁ
ରତି-ହ୍ରସ୍ୱ ଗ୍ଭତିର ଗହ୍ୱରୁ ।
ମାଦ୍ରୀ ଡାକେ ବାରେ ବାରେ
ମୃତ୍ୟୁ ଆଉ ସଂଭୋଗ ଶେଯରୁ ॥
ନାରୀ କି ପୃଥିବୀ ।
କର୍ଷଣର ଅତ୍ୟାଗ୍ଭରେ
ଧର୍ଷଣ ସୁହାରେ,
ଅନନ୍ତ ପୀଡ଼ନ ମଧ୍ୟେ ଫଳବତୀ ହୁଏ!
ଆଉ ଅତ୍ୟାଗ୍ଭରୀ ପୁରୁଷ ସେ
ଦନ୍ତାଘାତେ କରାଘାତେ ଅଗଣିତ ଅସହ୍ୟ ପୀଡ଼ାରେ
କାମନାର କମଣ୍ଡଳୁ
ନିଃସ୍ୱ କରି ପିଏ?

ମୈଥୁନ ଓ ମୃତ୍ୟୁ ଯେପରି ହାତ ଧରାଧରି ହୋଇ
ଗ୍ଭଲିଛନ୍ତି ଅନାଦି କାଳରୁ ।
ସେମାନଙ୍କ ମଧ୍ୟେ ବେଳେ ବେଳେ
(ସେମାନଙ୍କୁ ଛଡ଼ାଛଡ଼ି କରି)
ଛିଡ଼ାହୁଏ ଭଗ୍ନାଂଶ କାବ୍ୟର ପଥ ।
ହେଉ ତାହା ବିୟୋଗାନ୍ତ,
ଅବା ମଧୁମୟ,
ଗୀତି ଅବା ଗାଥା ।
କ୍ରୌଞ୍ଚର କରୁଣ ବ୍ୟଥା,
ଅଥବା ଅନାରକଳି
ମୃତ୍ୟୁ ଓ ପ୍ରଣୟ ॥

ପ୍ରଣୟର ତାହା କିନ୍ତୁ ଏକ ଉଚ୍ଚାରଣ ।
ଟ୍ରୟର ପ୍ରାଙ୍ଗଣ,
ଅବା ନୀଳନଦଚର ।
ହସ୍ତୀନାର ଅକ୍ଷୌହିଣୀ ରକ୍ତନଦୀଟିର
ଉଭୟ ତୀରରେ,

ଜ୍ୱଳନ୍ତ ଶିବିରେ
ମୃତ୍ୟୁ ଆସେ ମୈଥୁନ ସଂଗରେ ।
ପ୍ରେମ–ମୃତ୍ୟୁ । ଫୁଲ ଆଉ ବାତ୍ୟା ।
ହେଉ ତାହା ବଳିଦାନ,
ଅବା ଏକ ହତ୍ୟା ।
ରକ୍ତର ପିଚ୍ କାରୀ,
ଅବା ଆତ୍ମ୍-ଉତ୍ସର୍ଗର ସୁମହାନ କୀର୍ତ୍ତି ॥
ସଂଘର୍ଷ ବା କବିତାର କୋଳାହଳୁ ବର୍ତ୍ତି
ଏକକ ମୁହୂର୍ତ୍ତେ ବନ୍ଦୀ (ଆହା ସେ ବିଗ୍ଭରୀ!)
ସୁନିର୍ଜନ ଏକ ପ୍ରତିମୂର୍ତ୍ତି ॥

ଅନାଦି କାଳରୁ
ଅସଂଖ୍ୟ ଶରୀର ଭେଦେ
ଶୂନ୍ୟ ଓ ବିନ୍ଦୁରେ,
କିମ୍ବା ସେଇ ନିଃଶବ୍ଦ କବର ଦେହେ
ଗାଈଆଳ ପିଲାର ହାତରେ
ଅଙ୍ଗାର ତୂଳିରେ ଅଙ୍କା
ସଂଭୋଗ ଚିହ୍ନରେ
ବାସ୍ତବ ନିଶ୍ଚୟ ।
ଆଉ ହସ୍ତୀନାର ରାଜସଭାତଳେ
ସମ୍ମାନିତ ଗୁରୁଦେବ, ପିତାମହ
ମିଳିତ ସାକ୍ଷ୍ୟରେ

ଯୌନଚର୍ଚ୍ଚା
ରାଜକୀୟ ।
ମନ୍ଦ ନୁହେଁ ।
ପ୍ରେମ ଗ୍ଭହେଁ
ବିସ୍ମୃତିରୁ ମୁକ୍ତି ।
ସମସ୍ତ ବିଲୁପ୍ତି
ଚିରି ଫିଙ୍ଗି ଦେବାପାଇଁ ।
ଯେପରି ବେନାମୀ ଚିଠି ।

ପିଲାଦିନେ ଗାଆଁ ବାଡ଼େ
ବାରମାସୀ ପତ୍ରେ ଲେଖା
ପ୍ରେମିକ ଓ ପ୍ରେମିକାର ନାଆଁ
ମନେ ପଡ଼େ ।

କଲେଜ କାନ୍ଥରେ
କିମ୍ବା ସେଠି ବ୍ଲାକବୋର୍ଡେ
ତୁରନ୍ତ ଚକ୍ ରେ ଅଙ୍କା
ମୋ ସାଙ୍ଗରେ ମୋ ପ୍ରେମିକା
ସାଗରିକା ନାମ
କିଏ ଯଦି ଯୋଡ଼େ ।
ଗଭୀର ବିରକ୍ତି ସଙ୍ଗେ
ଲାଗୁଥିଲା ଖୁସି ।
କହିବାକୁ ଲାଜ ନାଇ ମାଡ଼େ ।
ତଥାପି ମୃତ୍ୟୁର କୀଟ
ପ୍ରେମେ ଭିଣି ଭିଣି
ନ କରି କି ଛାଡ଼େ !
ସେ ତାର କରୁଣ ସମାପ୍ତି ।
ପଙ୍କର ବ୍ୟାଜ୍ୟାପ୍ତି
ପଙ୍କେ ।

ବନ୍ଧ କକ୍ଷେ
ବିବେକର ମଶାରିର ଉଭୟ ପଟରେ
ସହସ୍ର ନାହୁଡ଼ ଯଦି ଗୁଣୁ ଗୁଣୁ କରେ ।
ମୌସୁମୀରେ ସ୍ଫୀତ ଏକ ସନ୍ଧ୍ୟାର ଶାଢ଼ୀରେ ।
ଝିଲ୍ଲିର କୋରସ୍ ପରି ...
ବ୍ୟତିବ୍ୟସ୍ତ କରେ
ଝିଲିମିଲି ମୋ ନିଃସଙ୍ଗ
ମିନିଟ୍ ଗୁଡ଼ିକୁ ।
ହେଉବା ସେ ରାଜକନ୍ୟା
ଅଥବା ତାପସୀ ।

ସରଳା ଗ୍ରାମର ନାରୀ
ଜୋଲାର ମାନସୀ
ନାନା ।
ଅଥବା ନାନାବତୀ
ନିର୍ଲେଳା ଉର୍ବଶୀ ।
କିମ୍ବା ହିମାଦ୍ରିର କୁଞ୍ଜେ
(କୁମାର ସମ୍ଭବ ଆଗେ)
ଏକାନ୍ତ ପ୍ରହରେ ।
ବନ୍ଦୀ
ଏକ ପାର୍ବତୀୟ ନଦୀ ।
ମଥୁରା-ପାଚିରି ଘେରା
ରାଣୀହଂସପୁରେ,
ଅଥବା ଯମୁନାକୂଳେ
ଉନ୍ମୁକ୍ତ ପ୍ରାନ୍ତରେ ।
ଏକ ମହା ଯୌନତାର ସ୍ୱର
ନିବିଡ଼ ସମୁଦ୍ରକଣ୍ଠେ
ଡାକେ ମୋତେ
ଡାକେ ପ୍ରତିଥର ।

କିନ୍ତୁ ହାୟ!
କାଲି ଯେବେ ଦେଖା ହୋଇଗଲା
(କେତେ) ରୋମାଞ୍ଚ ସନ୍ଧ୍ୟାର ଫିକା
ସ୍ମୃତିର ନାୟିକା,
ସାଗରିକା ସଙ୍ଗେ
ବହୁ ବର୍ଷପରେ ତ ନିଶ୍ଚୟ ।
ସଫଳ ମାତୃତ୍ୱ ଆଉ ଗୃହିଣୀର ରଙ୍ଗେ
ସୁସଜ୍ଜିତା, ସମ୍ଭ୍ରାନ୍ତ ମହିଳା ।
ଭାବିଲି, ସେ ଭୁଲି ଅବା ଗଲା ଅତୀତର ନୀଳ ନୀଳ
ସବୁ ବିଷ-ରାତି,
କରୁଣ ପାହାନ୍ତି ।

ଆଉ ଉଖୁରାଇ ଲାଭ ନାଇ ।
ବରଂ ଗର୍ବିତ ହୁଏ ତାର ଉଛମାନେ ।
ଅତୀତର ପୃଷ୍ଠା ଲେଉଟାଇ
କଣ ବା ମିଳିବ ?
ଇଚ୍ଛା ହୁଏ ପ୍ରାଣ ଖୋଲି
ଖାଲି
ଦେବାକୁ ବଧେଇ ।
କହିବାକୁ ମନ ଖୋଲି
ଗୃପି ତାର ହାତର ପାପୁଲି—
"କି ଆନନ୍ଦ, ଦେଖା ହେଲା,
ଅଛ ଭଲ!
ଶୁଣୁଛି ମୁଁ, ଦେଖି ବି ବୁଝୁଛି
ସବୁ ନିଶ୍ଚେ ଭଲ ।"

ଠିକ୍ କହିବାକୁ ଯାଉଚି—

ଛି! ଛି! ଛି!
ସେ କିନ୍ତୁ ବାଆଁରେଇ ହୋଇ
ନ ଦେଖିଲାପରି
ନ ଚିହ୍ନିଲାପରି
ମୁହଁକୁ ବୁଲାଇନେଲା ।

ଦ୍ରୌପଦୀର ଶାଢ଼ୀ ଶତ ବନ୍ଧନରେ
ପୁଣି ବାନ୍ଧି ହୋଇ ଆସିଲା ।
ଆଉ ଖୋଲିଲା ନାଇ ॥

ମୁଁ ତନ୍ମୟ ହେଇ ଶୁଣି ସାରି ଗୋଟେ ଠିପି ଖୋଲା ବୋତଲ ଧରି କହିଲି, "ଏଇ ମୋର ବୋତଲେ କବିତା । ଏଇ ମୋର ସାଗରିକା, ଏଇ ମୋର ପ୍ରତିମା, ଏଇ ମୋର ଅଳକା ସାନ୍ୟାଲ..." କହୁ କହୁ ମୋ ଚେତନାରେ କିଟିକିଟି ଅନ୍ଧାର ଗତି ଚରିଗଲା । ମୁଁ କହିଲି, "କାଳୁ ରେ, ମ୍ରେ ଜୀବନଟା ବ୍ୟର୍ଥ ଗଲା । ମୁଁ ସୁନ୍ଦର ଅଭୁଲା କିଛି ଲେଖିପାରିଲିନି କି ଲେଖିପାରିବି ବୋଲି ଆଉ ପ୍ରତ୍ୟୟ ଆସୁନି । କି ଚିଜ ମୁଁ କରୁଛି ? ମଲା ପରେ ମୁଁ ଅତୃପ୍ତ ଆତ୍ମାଟେ ହେଇ ଘୂରି ବୁଲିବି ରେ ।"

"ମଲା ପରେ ନୁହେଁ, ତୁ ଆଜନ୍ମ ଗୋଟେ ଅତୃପ୍ତ ଆତ୍ମା!" କାଳୁ ଜୋର୍ ଦେଇ କହିଲା, "କେତେବେଳେ ମୋର ଦି ଧାଡ଼ି କବିତାକୁ ଭଲ କହିଛୁ?"

"ତୋ କବିତାକୁ ପ୍ରଶଂସା ନ କଲି ବୋଲି ମୁଁ ଅତୃପ୍ତ ଆତ୍ମା?"

"ମୋ କବିତା କଅଣ ଖରାପ? ଯୋଉମାନେ ପୁରସ୍କାର ପାଉଛନ୍ତି ସେମାନେ କଅଣ ଅଧିକ ଓଲଟେଇ ପକଉଛନ୍ତି? ହେଲେ ତୁ କହିବୁ — ହେଲାନି । ଟେକାଟା ଠିକ୍ ମାଠିଆରେ ବାଜିଲାନି, ରସଟା ଝରିଲାନି । ମୁଁ କବିତା ଲେଖୁଛି ନା ଖଜୁରି ଗଛକୁ ଟେକା ଫୋପାଡୁଛି?"

"ତୁ କବିତା ଲେଖିଲେଖି ସ୍ୱର୍ଗକୁ ଯା । ମୁଁ ଅତୃପ୍ତ ଆତ୍ମା ହେଇ ଘୂରିବୁଲିବି, ଆଉ ତୋ ପ୍ରତି ଅବିଗ୍ଚର କରିଥିବା ବିଗ୍ଚରକଙ୍କ ମୁଣ୍ଡ ଗୋଟା ଗୋଟା ମୋଡ଼ିବି ।" ମୁଁ କାଳୁକୁ ସାନ୍ତ୍ୱନା ଦେଲି ।

କାଳୁ ଆଖି ଝଲସି ଉଠିଲା — "ବାଃ ବନ୍ଧୁ, କି ଉଜ୍ଜ୍ୱଳ ମୃତ୍ୟୁ ପରର ଜୀବନର କଳ୍ପନା । ମୁଁ ବି ଅତୃପ୍ତ ଆତ୍ମା ହେବି । ଅବିଗ୍ଚରୀ ବିଗ୍ଚରକଗୁଡାଙ୍କୁ କଞ୍ଚା ଗ୍ଚେବେଇବି । ଆମେ ଦିଜଣ ମିଶିକି ସମସ୍ତଙ୍କୁ କଡ଼କଡ଼ କରି ଗ୍ଚେବେଇବା । ମୋର ପୁରସ୍କାର ଫୁରସ୍କାର ଦରକାର ନାହିଁ ।"

ଆମେ ଦିଜଣ କାହା କାହାକୁ କଞ୍ଚା ଗ୍ଚେବେଇବୁ ତାର ଗୋଟେ ଲମ୍ବା ତାଲିକା କରି ଏକ ପ୍ରକାର ଅତିଭୌତିକ ଆନନ୍ଦ ଅନୁଭବ କଲୁ । ସେଇ ସାଙ୍ଗେ ସାଙ୍ଗେ ଅଶରୀରୀ ହେଇ ଦିଗ୍ଭରିଟାଙ୍କ ବେକ ମୋଡ଼ି ପାରୁନୁ ବୋଲି ପୁଣି ଅବସୋସ ବି କଲୁ ।

କାଳୁ ପୁଣି ପୂର୍ବ ବିଷୟକୁ ଫେରି ଆସିଲା, "ତୋ ପାଇଁ ସିନା ମୋ କବିତାରୁ ରସ ଝରୁନି । ହେଲେ ମୋର ଛାତ୍ରଛାତ୍ରୀ ବାଦ୍ ମୁଖପୁସ୍ତିକାରେ, ହ୍ୱାଟ୍ସଆପରେ କେତେ ପାଠକପାଠିକା ଜାଣୁ? ଶୁଣ୍ ଦି ଧାଡ଼ି, ତାପରେ କହିବୁ—

ସତରେ ପେଜଖିଆ ଶାଗଖିଆକୁ ସହିପାରେନା?
ଏଠି ପେଜଖିଆ ତୁଚ୍ଛାରେ ବଦନାମ
ଗରିବ ମାଇପ, ସମସ୍ତଙ୍କ ଶାଳୀ ।
ଶାଗଖିଆ ଗ୍ଚହେଁ, ପେଜଖିଆ ଚିରଦିନ ପେଜଖିଆ ରହୁ ।
ସେ ସନ୍ଥ ହଉ ବିଦ୍ରୋହୀ ହଉ
ବୋହେମିଆନ୍ ହଉ, ମାତାଲ ହଉ,
ତ୍ୟାଗୀ ହଉ, ଯୋଗୀ ହଉ, ଯାହା ତାହା ହଉ, କିନ୍ତୁ ପ୍ରତିଦ୍ୱନ୍ଦୀ ନ ହଉ ।

ଶାଗକିଆରିରେ ଖାଲି ଶାଗଖିଆର ଅଧିକାର
ତା ବାପଗୋସାପଙ୍କ ଜାଗିରି
ଆରମ୍ଭରୁ ସଭ୍ୟତାର କି ସମୟର!
ପେଜଖିଆ ମାତିଲେ ଶାଗଖିଆର ଭୟ
ମୋ କିଆରିରେ ଆଖି, ଚିରହରିତ୍ ହେବାର ସ୍ୱପ୍ନ?"

ମୁଁ କାଳୁକୁ ଆଖି ଠରଟି ଅନାଇଲି, "ଏଥର ବାଜିଛି! ଓଃ କାଳୁ, ଯେ କବିତା ସରକାର ଭାଙ୍ଗିବ ।"

"ସରକାର ଭାଙ୍ଗିବ? ଆଁୟ? ତୁ ସତ କହୁଛୁ? ସରକାର ଭାଙ୍ଗିବ? ଗଧା ନାଚିବ?" କାଳୁ ପଚାରିଲା ।

"ହଁ, ହଁ, ଗଧା ନାଚିବ, ନାଚିବ, ଅଲବତ୍ ନାଚିବ ।" ମୁଁ କାଳୁର ହାତ ଧରି କହିଲି, "ତୋ ଦେହ ଛୁଇଁ କହୁଛି ।"

"ହେୟ ମୋ ଦେହ ଫେହ ଛୁଁନା, ମୁଁ ମରିଯିବି, ତୋ କଥାରେ ଠିକଣା ନାହିଁ ।"

"ହଉ, ମୁଁ ବୋତଲ ଛୁଇଁ କହୁଛି," ମୁଁ ବୋତଲଟା ଧରିଲି, ହେଲେ ବୋତଲଟା ସେତେବେଳକୁ ଖାଲି । କିନ୍ତୁ କାଳୁ ମୋ କଥାରେ ପ୍ରତ୍ୟୟ ଗଲା ଭଳି ମନେହେଲା । ସେ କହିଲା, "ବୁଝିଲୁ, ପାଠିକାମାନଙ୍କର କମେଣ୍ଟ ଆସିଲେ ତୋ ଭାଉଜ ବେଳେ ବେଳେ ସନ୍ଦେହ କରୁଛି କାଳେ ମୋର କାହା ସହ ପ୍ରେମ ଫ୍ରେମ ଚାଲିଛି କି କଅଣ । ହେଲେ ମୋର ସେସବୁ ଧନ୍ଦାରେ ଆଉ ପଶିବାର ନାହିଁ । ସର୍ବସାଧାରଣରେ ନିଜକୁ ପତ୍ନୀବ୍ରତ ଘୋଷଣା କରିବାରେ ମୋର ଦ୍ୱିଧା ନାହିଁ । ମୋର ଟାର୍ଗେଟ ହଉଛି ଆମ ମହାବିଦ୍ୟାଳୟର ଅଧକ୍ଷ । ସେଟା ମଣିଷ ନୁହେଁ ତ ଗୋଟେ ପିଶାଚ । ବୁଢ଼ା ହେଲାଣି ହେଲେ ନୁଙ୍ଗୁର୍ ଗୁଣ ଯାଇନି । ମ୍ୟାଡମମାନଙ୍କୁ ଦେଖିଲେ ନୁଙ୍ଗୁରେଇବ । ମୋତେ କଅଣ ଭାବୁଛି କେଜାଣି ସୁଲଭ ଶୌଚାଳୟ ନା କଅଣ, ବର୍ଜ୍ୟବସ୍ତୁ ଭଳିଆ କାମ ଆଣିକି ଗଦେଇ ଦଉଛି ।"

"ତୁ ତୋ ଶୁଦ୍ଧଭାଷାରେ ତାକୁ କିଛି ଶୁଣେଇଥିବୁ ।"

"ତା ମୁହଁ ଉପରେ ଶୁଣେଇନି, ହେଲେ ପଛରେ ବେଳେ ବେଳେ ପାଟିରୁ ବାହାରି ପଡ଼େ । ପିଶାଚ କାନରେ ପଡ଼ିଥିବ ନିଶ୍ଚୟ । ହେଇ ହେଇ କି ଗୋଟେ ଅନୁଦାନପ୍ରାପ୍ତ ମହାବିଦ୍ୟାଳୟର ଅଧକ୍ଷ, ହେଲେ ଅଖଣ୍ଡମଣ୍ଡଳପତି ଭଳି

ହାବଭାବ ସେ ବୁଢ଼ାର । ମୁଁ ପଢ଼େଇ ସାରି ଘରୁକୁ ବାହାରୁଥିବି, ଡ଼ାକ ପକେଇବ – ଯେ କାଳିନ୍ଦୀ ବାବୁ, ଟିକେ ଫାଇଲଟା ଦେଖିବେ । ଯେ କାଳିନ୍ଦୀ ବାବୁ ବିଭାଗୀୟ ସଚିବଙ୍କ ପାଖକୁ ଗୋଟେ ଦରଖାସ୍ତ ଲେଖିବାର ଅଛି, ଟିକେ ଆସନ୍ତୁ । ଛୁଟିରେ କୁଆଡ଼େ ଯାଇଥିବି ଫୋନ କରିକି କହିବ – କାଳିନ୍ଦୀ ବାବୁ, ସେପଟକୁ ଯାଇଛନ୍ତି ଯେତେବେଳେ ଟିକେ ଅମୁକ ବାବୁଙ୍କ ପାଖରେ ମୁହଁ ମାରି ଦେଇ ଆସିବେ, ଯାହା ହେଲେ କଲେଜ କାମ । ଆଉ କିଛି କାମ ନ ଥିଲେ ମୋତେ ଆଉ ଚାରି ପାଞ୍ଚଜଣଙ୍କୁ ଡ଼କେଇ ନିଜ କୋଠରିରେ ବସେଇ ଶୁଣେଇବ ତାର କୋଉ କେନ୍ଦ୍ରମନ୍ତ୍ରୀ ସହ କେତେ ଘଣି । କୋଉକାଳରେ ବୁଢ଼ା ରାଜନୀତି ବିଜ୍ଞାନ ପଢ଼ିଥିଲା, ଆମ ରାଜନେତାମାନେ କାଳେ ତା ପରାମର୍ଶ ନିଅନ୍ତି କଅଁଣ କରିବେ ନ କରିବେ । ରାଜନୀତି ଶାସ୍ତ୍ରରେ ତାର ଏତେ ଗଭୀର ଜ୍ଞାନ! ଯଦି ଅମୁକେଇ ଦଳ ସରକାରକୁ ଆସେ, ସେ ବୁଢ଼ାର କାଳେ ରାଜ୍ୟସଭା ଥୁଆ । ବସେଇକି ଏମିତି ନଳି ପେଲିବ କଅଁଣ କହିବି । ଇଏ ପୁଣି ରାଜ୍ୟସଭା ସଦସ୍ୟ, ହୁଃ ।"

"ଖାଲି ତୋ କଲେଜ ଅଧକ୍ଷ କାହିଁକି? ଆମର ଏଠି ପ୍ରଶାସକ, ଶିଳ୍ପପତି, ସାମ୍ବାଦିକ, ଅଧ୍ୟାପକ, ସାହିତ୍ୟିକ, କଳାକାର ସମସ୍ତଙ୍କର ଅଭିଳାଷ ରାଜ୍ୟସଭା ପଦ । ଚୂଡ଼ାନ୍ତ, ଆମର ମୂଲ୍ୟବୋଧ!"

"ନ ହେଲେ ରାଜ୍ୟ ସରକାରଙ୍କ ଅଧୀନରେ କ୍ୟାବିନେଟ୍ ପାହ୍ୟା । ହେଃ ଛାଡ଼ ସେ ଅଲଣା କଥା, ଆମକୁ ସେଥିରୁ କଅଁଣ ମିଳୁଛି? ଖାଲି ସେ ବୁଢ଼ା ପିଶାଚ ପାଇଁ ମୁଁ ମୋ କବିତା ମୁଖପୁସ୍ତିକାରେ ଛାଡୁଛି । ଆଜି ଯାଏଁ ପିଇପିଇକି ତା କଲିଜା ଯେତିକି ପୋଡ଼ି ନଥିବ, ମୋ କବିତାରେ ଦଶଟା ପାଠିକାଙ୍କର ମତ ଆସିଲେ ତା କଲିଜା ତାଠୁଁ ଅଧିକ ପୋଡୁଥିବ । ବୁଝିଲୁ?" କାଳୁ ତା ଅଧକ୍ଷର ପୋଡ଼ା କଲିଜା କଳ୍ପନା କରି ଖୁବ୍ ଗୋଟେ ଆହ୍ଲାଦିତ ହେଇ କହିଲା ।

"ଓହଃ, ଏମନ୍ତ କଥା? ମାଡ଼ିଚାଲ, ବନ୍ଧୁ । ଜୟ କଳା!" ମୁଁ ପ୍ରେରଣା ଦେବାକୁ ଯାଇ କହିଲି । ହୁଏତ ସେଇ ମୁହୂର୍ତ୍ତରେ ଏଇ ପ୍ରେରଣା ଟିକକ ଦେବାଟା ମୋର ଭୁଲ୍ ଥିଲା ।

କାଳୁ ସତକୁ ସତ ମାଡ଼ି ଚାଲିଲା ।

"ଶୁଣ୍, ଆଉ ଗୋଟେ କବିତା ।

ଲୋଡ଼ା ନାହିଁ ମୋର ତୁମ ଫୁଲମାଳ, ଲୋଡ଼ା ନାହିଁ ମୋର ତୁମ ଗଙ୍ଗାଜଳ
ଲୋଡ଼ା ନାହିଁ ମୋର ତୁମ ଫୁଲମାଳ, ଲୋଡ଼ା ନାହିଁ ମୋର ତୁମ ଗଙ୍ଗାଜଳ

ଲୋଡ଼ା କେବଳ ମୋର ଦୁଇ ଦିସ୍ତା କାଗଜ ଆଉ ନୀଳ କାଳି ବହଳ
ଲୋଡ଼ା କେବଳ ମୋର ଦୁଇ ଦିସ୍ତା କାଗଜ ଆଉ ନୀଳ କାଳି ବହଳ
ଲୋଡ଼ା ନାହିଁ ଗଜେନ୍ଦ୍ରାସନ, ଲୋଡ଼ା ନାହିଁ ସୈନ୍ୟସାମନ୍ତବଳ
ଲୋଡ଼ା କେବଳ ମୋ ପ୍ରିୟାର ହଳଦୀ ଅଞ୍ଚଳ, ମୋ ପ୍ରିୟାର ହଳଦୀ ଅଞ୍ଚଳ ।"

କାଳୁ ମୋ ମତାମତକୁ ଅପେକ୍ଷା କଲା – ଯେମିତି ଜ୍ୟେଷ୍ଠ ଶେଷ ବେଳକୁ ଆମେ ମୌସୁମୀକୁ ଅପେକ୍ଷା କରୁ ।

"କାଳୁ ରେ," ମୁଁ ଟିକେ ଚିନ୍ତା କରି କହିଲି, "ୟେ କବିତା ଥରେ ତୁ ଯଦି ସମ୍ରାଟ ଅଶୋକଙ୍କୁ ଶୁଣେଇ ଥାଆନ୍ତୁ, ସେ କଳିଙ୍ଗ ଆକ୍ରମଣ କରିନଥାନ୍ତେ । ଆମ ସାହିତ୍ୟ କଅଣ ଇତିହାସର ମୋଡ଼ ବଦଳିଯାଇଥାନ୍ତା ।"

କାଳୁ ମୋତେ କେତେ ସମୟ ଗାରଡ଼େଇକି ଅନେଇଲା । ତା ପରେ ଟଳମଳ ହେଇକି ଠିଆ ହେଲା, ମୋ ହାତ ଧରି ଟାଣିଲା ।

"ଓଥୋଡ଼ା, ତୁ ବାହାର୍ ଏଠୁ । ରାସ୍ତାରେ ବୁଲିବୁ ଯା ଅତୃପ୍ତ ଆତ୍ମା! ବାହାର ଶଳାଃ!" କାଳୁ ମୋତେ ଟାଣି ଟାଣି ମୁଖ୍ୟ ଦ୍ୱାର ଆଡ଼କୁ ନେବାକୁ ଚେଷ୍ଟା କଲା ।

"ରହ କାଳୁ, ଏତେ ରାତିରେ କୁଆଡ଼େ ଯିବି? ଆରେ, ମୋ କଥା ଟିକେ ଶୁଣ୍!" ମୁଁ ଯେତେ କହିଲି ସେ ଶୁଣିଲାନି । ନିଶାମାଡ଼ରେ ତା ଆଖି ବୁଜି ହେଇ ଆସୁଥାଏ । ସେ ମୋତେ ଟାଣିପାରିଲାନି, ବୈଠକ ଘରେ ଗୋଟେ ଚୌକିରେ ଲଥ୍ କିନା ବସିପଡ଼ିଲା । ସେଇ ମୌକାରେ ମୁଁ ଶୋଇବା ଘରେ ପଶି ଯାଇ ଭିତରୁ କବାଟ ବନ୍ଦ କରିଦେଲି ।

ସକାଳୁ ମୁଁ ଉଠିଲା ବେଳକୁ ଅନ୍ୟ ଗୋଟେ କୋଠରିରୁ କାଳୁର ହାଲୁକା ଘୁଙ୍ଗୁଡ଼ି ଶୁଭୁଥିଲା ।

ବିରିଆନି ଖାଉ ଖାଉ ନଳିନୀ ବାବୁଙ୍କ ଫୋନ ଆସିଲା ।

"କୋଉଠି? ସାନ ଝିଅ ପଚାରୁଛି, କାକୁ କୁଆଡ଼େ ଗଲେ, କାଇଁ ଖାଇଲେନି ତ?"

"ଓହୋଃ ହୋଃ! ଟିକେ କାମ ଥିଲା । ବାହାରୁକୁ ଆସିଛି । ହେଇ ପହଞ୍ଚୁଛି ।" ମୁଁ ହସିକି କହିଲି ।

କାଳୁର ମୋର ଟଣାଓଟରା ନୂଆ ନୁହେଁ, ସଦାବେଳେ ଗ୍ଲିଥାଏ । କେବେ କେବେ କାଳୁ ନିଜକୁ ମୋର ଅଲ୍ଟର ଇଗୋ ବୋଲି ଦାବି କରେ ତ ଆଉ କେବେ ମୋତେ ତାର ବିବେକ ଭକ୍ଷକ ବୋଲି ଆକ୍ଷେପ କରେ । ହେଲେ କାଳୁ ଭିତରେ କୋଉଠି କବିତାର ଝରଟେ ଅଛି; ଜାଣେନା ତା ଅଙ୍କା ବଙ୍କା ପାହାଡ଼ି ନଈଟେ ହେଇ ସମୁଦ୍ର ମୁହାଁ ବହି ଯିବ କି ନାହିଁ ।

କାଳୁ ଆଉ ମୁଁ ପ୍ରଥମରୁ ପଞ୍ଚମ ଗୋଟେ ଇସ୍କୁଲରେ ପଢୁଥିଲୁ । ତା ବାପା ସେଠି ଶିକ୍ଷକତା କରୁଥିଲେ । ସେତେବେଳେ କାଳୁ ଅତି ଶାନ୍ତସୁଧାର ପିଲାଟିଏ ଥିଲା । ଷଷ୍ଠ ଶ୍ରେଣୀରୁ ଦ୍ୱାଦଶ ପର୍ଯ୍ୟନ୍ତ ତାର ବାପା ତାକୁ ଶୃଙ୍ଖଳିତ କରିବାକୁ ଶିକ୍ଷା ବିଭାଗର ଉପରିସ୍ଥ କାହାକୁ କୁହାବୋଲା କରି ଗୋଟେ ସରକାରୀ ଆବାସିକ ବିଦ୍ୟାଳୟରେ ରଖାଇବାର ବ୍ୟବସ୍ଥା କଲେ । ସେଠି ବଡ଼ ଶ୍ରେଣୀର କିଛି ପିଲା ପ୍ରତି ବାକ୍ୟ ଆରମ୍ଭରେ ଦୋଅକ୍ଷରି କହିବାକୁ ଶିଖେଇଲେ । ସେଇଠୁ କାଳୁର ଅଭ୍ୟାସଟା ରହିଗଲା । ତା ବାପା ଗ୍ହୁଁଥିଲେ କାଳୁ ଡାକ୍ତରୀ କି ଇଞ୍ଜିନିୟରିଙ୍ଗ ପଢୁ । ହେଲେ କାଳୁର ସାହିତ୍ୟରେ ଝୁଙ୍କ୍ । କାଳୁ ଅଡ଼ି ବସିଲା; ଓଡ଼ିଆ ସାହିତ୍ୟରେ ସ୍ନାତକ କଲା । ସ୍ନାତକୋତ୍ତର ସରିଲା ବେଳକୁ ଆମ ସାଙ୍ଗିଆ କେତେ ଇଞ୍ଜିନିଅର ହେଇ ଗାଡ଼ିଘୋଡ଼ା ଧରି ବୁଲିଲେଣି ।

ଥରେ କାଳୁର ବାପା ତାକୁ କହିଲେ, "ଦେଖେ ତୋ ସାଙ୍ଗମାନଙ୍କୁ । ସେମାନଙ୍କର ଗ୍କିରିବାକିରି ଅଛି । ଗାଡ଼ିଘୋଡ଼ା ଅଛି । ତୋର କଅଣ ଅଛି ?"

ଆତ୍ମସମ୍ମାନକୁ ଏଭଳି ଧିକ୍କାରରେ କାଳୁ ଭିତରେ ଇନକିଲାବ୍ ଜାଗି ଉଠିଲା । କାଳୁ ଦୀୱାର ସିନେମାର ଶଶି କପୁର ଭଙ୍ଗୀରେ ଜବାବ ଦେଲା, "ମୋ ପାଖରେ ସାହିତ୍ୟ ଅଛି ।"

ତା ଗାଲରେ ଗୋଟେ ଶକ୍ତ ଗ୍ପୁଡ଼ା ପଡ଼ିଲା – "କାମଧନ୍ଦା କିଛି ନାହିଁ, ମୁହଁ ବାର କାହାଣେ ଆଠ ପଣ!"

କାଳୁ ଭାବିଲା – ଯାହା ହେଲେ କିଛି କରିବାକୁ ପଡ଼ିବ । ନଈବଢ଼ିରେ କୁଟାଖିଅ ଭଳି ତାକୁ ଜଟଣୀ ପାଖରେ ଏଇ ଅନୁଦାନପ୍ରାପ୍ତ କଲେଜରେ ଗ୍କିରିଟା ମିଳିଗଲା । ପ୍ରଥମେ ଅସ୍ଥାୟୀ ଥିଲା, କିନ୍ତୁ ପରେ ଗ୍କିରି ସ୍ଥାୟୀ ହେଲା । ଦରମା ବି ବଢ଼ିଲା । କାଳୁ ଅନ୍ୟ କିଛି ଗ୍କିରି ଚେଷ୍ଟା ବି କଲାନି । ପ୍ରାୟ ଅଧ ଡ଼ଜନେ ଖଣ୍ଡେ ପ୍ରେମରେ ବିଫଳ ହେବା ପରେ "ବାହା ହେବିନି, ବାହା ହେବିନି" କହି କହି କାଳକ୍ରମେ କାଳୁ ବାପାବୋଉ ଦେଖି ପସନ୍ଦ କରିଥିବା ଝିଅକୁ ବାହାହେବାକୁ

ରାଜି ହେଲା । ଆମେ ମାତାଲ ହେଇ ନାଗିନ୍ ଗୀତରେ ସାପ ଭଳି ନାଚି ନାଚି ତା ବରଯାତ୍ରୀ ଦଳରେ ବାଲୁଗାଁ ଗଲୁ । ତାପରେ "ଲକ୍ଷ୍ମୀ ଭଳି ସ୍ତ୍ରୀଟିଏ ପାଇଛି" ବୋଲି କାଲୁ ମୁହଁରୁ ନିୟମିତ ଶୁଣିବାକୁ ପାଇଲୁ । ବାହାଘରର ଦୁଇବର୍ଷ ମଧ୍ୟରେ ଦୁଇଟି କନ୍ୟାରତ୍ନଙ୍କର ବାପା ବି ଆମ କାଲୁ ହେଲା । ଡୁମଡୁମା ପଟେ ଖଣ୍ଡେ ଜାଗା କିଣିକି ପକେଇଲା । ଏବେ ଘର ଖଣ୍ଡେ କରିବାର ଯୋଜନା । ତା ଛଡ଼ା ଯ୍ୟା ଭିତରେ ତିନିଖଣ୍ଡ କବିତା ବହି ନିଜ ଖର୍ଚ୍ଚରେ ଛପେଇ ସାରିଲାଣି । ପ୍ରଥମ ବହିଟିକୁ ତା "ଜୀବନର ପ୍ରେରଣା ବାପାଙ୍କୁ" ଉତ୍ସର୍ଗ କଲା । ଦ୍ୱିତୀୟ ବହିକୁ ତା "ପ୍ରାଣର ବୋଉକୁ" ସମର୍ପି ବହେ କାନ୍ଦିଲା । ଅଧ ଡଜନେ ପ୍ରେମିକାଙ୍କ ମିଳନ ବିରହରେ କବିତା ଲେଖି ଯୋଉ ଆଠ ଦଶଟା ଦିନଲିପି ସାରିଥିଲା ସେଥିରୁ ଏକାଠି କରି ତା ଉପରେ ଦାମ୍ପତ୍ୟ ଶୃଙ୍ଗାରର ପୁଟ ଲଗାଇ ତା "ହୃଦୟର ସାମ୍ରାଜ୍ଞୀ, ପ୍ରିୟତମା ପତ୍ନୀଙ୍କୁ" ତୃତୀୟ ବହି ଖଣ୍ଡକ ଦେଇ ସ୍ତ୍ରୀ ଆଖିରେ ପ୍ରଣୟର ଦେବତା ସାଜିଲା । ଚତୁର୍ଥ ବହି ଖଣ୍ଡକ ଧୂଆଁଘର ପ୍ରଯୋଜିତ, ତେଣୁ "ଧୂଆଁଘର ବନ୍ଧୁମାନଙ୍କୁ" ନିବେଦିତ (ଦ୍ୱିଅର୍ଥବୋଧକ ଶବ୍ଦ ଭର୍ତ୍ତି ପଦ୍ୟଛନ୍ଦମାଳାକୁ ନିଜର ବୋତଲ ବନ୍ଧୁଙ୍କ ଛଡ଼ା ଆଉ କାହାକୁ ଉତ୍ସର୍ଗ କରିଥାଆନ୍ତା?) । ଆଉ ଦି ଖଣ୍ଡ ବହି ପାଇଁ ପାଣ୍ଡୁଲିପି ପ୍ରସ୍ତୁତ, କିନ୍ତୁ ତାକୁ ପ୍ରକାଶ କରିବାକୁ ସେ ଏତେ ବ୍ୟଗ୍ର ନୁହେଁ । ଖଣ୍ଡଗିରି ଯାତ୍ରାରେ ଗୋଟେ ବହି ଚଲେଇ ଲକ୍ଷପତି ହେବା ଆଶାରେ କାଲୁ ବର୍ତ୍ତମାନ ଗୋଟେ ଯାତ୍ରା ଲେଖୁଛି, ଆଉ "ଦେଖିବୁ କେମିତି ବହି ଜଳିବ" ବୋଲି ମୋତେ ଯ୍ୟା ଭିତରେ ପ୍ରାୟ ପଚିଶ ଥର କହିସାରିଲାଣି । ତା ଛଡ଼ା କେମିତି ପୁରସ୍କାର ପାଇବ ଏବଂ ସାହିତ୍ୟ କ୍ଷେତ୍ରରେ ପ୍ରଭାବଶାଳୀ ହେବ ସେ ଚକ୍କରରେ ମଧ୍ୟ ଅଛି – ଯ୍ୟାକୁ ନେଇ ତାର ମୋର ଅସରନ୍ତି ଗୋଡ଼ ଟଣାଟଣି ।

ଚାରି ବର୍ଷ ଖଣ୍ଡେ ତଳର କଥା । କଲେଜର କୋଉ କାମରେ ଫାଇଲ ନେଇ କାଲୁ ସଚିବାଳୟ ଯାଇଥିଲା, ସାଙ୍ଗରେ ମୁଁ ବି ଥିଲି । ଫେରିବା ବେଳକୁ ଆମେ ଦେଖିଲୁ ସଚିବାଳୟ ରାସ୍ତାଧାରେ ଭବିଷ୍ୟଦ୍ରଷ୍ଟା ଶୁଆ ଧରି ଜଣେ ଲୋକ ବସିଥିଲେ ।

କାଲୁ କହିଲା, "ଚାଲ୍ ପଚାରିବା, ମୋର ଏ ବର୍ଷ ରାଜ୍ୟ ସରକାରୀ ପୁରସ୍କାରଟା ହବ କି ନାହିଁ?"

"ବାୟା ହେଲୁ?"

"ଚାଲ୍ ମ, ଗୋଟେ ଖୁସି ଆଉ!"

କାଳୁ ଯାଇ ସେ ଲୋକଙ୍କୁ ପୁରସ୍କାର ବିଷୟରେ ସବିଶେଷ ବର୍ଣ୍ଣନା କରି ପଚାରିଲା – "କଣ ସମ୍ଭାବନା ?"

"ହଁ, କିଛିଦିନ ତଳେ ସ୍ୱାମୀସ୍ତ୍ରୀ ଦିଜଣ ଆସି ଏଇ ପୁରସ୍କାର କଥା ପଚାରୁଥିଲେ । ଆଉ ସାତଆଠ ଜଣ ବି ଆସିକି ଏଯା ଜାଣିବାକୁ ଚାହୁଁଥିଲେ ।" ଶୁଆ ମାଲିକ କହିଲେ ।

"ଦେଖୁଛୁ ? କେତେ ପ୍ରତିଯୋଗିତା ?" କାଳୁ ମୋ ଆଡ଼େ ଅନେଇ କହିଲା ।

ଭବିଷ୍ୟଦ୍ରଷ୍ଟା ଶୁଆ ପଞ୍ଜୁରିରୁ ବାହାରି ଗୋଟେ ଛୋଟ ପଟି କାଢ଼ି ଦେଖେଇଲା — "ହଁ ।"

"ଆଜ୍ଞା, କେବଳ ଆପଣଙ୍କର ହଁ ବାହାରିଲା ।" ଶୁଆ ମାଲିକ କାଳୁକୁ କହିଲେ ।

କାଳୁ ଦୁଇଶହ ଟଙ୍କା ଦେଇ ବାଇକ୍ ମାରି ମୋତେ କୁରୁଳି କୁରୁଳି କହିଲା – "ବନ୍ଧୁ, ଏଥର ମୋତେ କେହି ଅଟକେଇ ପାରିବେନି ।"

ସେ ବର୍ଷ ସେ ବାଟେ ଆମେ ଯେତେ ଥର ଗଲୁ, କାଳୁ ଶୁଆ ପାଖରେ ଗାଡ଼ି ଅଟକେଇଲା । ଶୁଆ ମାଲିକକୁ ଦୋଅକ୍ଷରି ଶୁଣେଇଲା । ଏ ଭାବେ ଟଙ୍କା ଦିତିନି ହଜାର ଗଲା । ପ୍ରତିଥର ଆଶାବାଣୀ ଶୁଣି କାଳୁ କଳ୍ପନାରେ ଭାସିଲା । ହେଲେ ପୁରସ୍କାର ଘୋଷଣା ହେଲାନି ।

କାଳୁ ପୁଣି ଥରେ ଶୁଆ ପାଖକୁ ଗଲା । ଏଥର କାଳୁକୁ ଦେଖୁ ଦେଖୁ ଶୁଆ ଦୋଅକ୍ଷରି ଶୁଣେଇଲା ।

"ପାଇଗଲି, ପାଇଗଲି, ଆଜି ଅନୁପମା ସୁନ୍ଦରୀ ଚେଲି ଖଣ୍ଡେ ପାଇଗଲି!" କାଳୁ ଶୁଆକୁ ଆଉଁସି ଆଉଁସି କହିଲା । ଶୁଆସୁନ୍ଦରୀ କାଳୁ ହାତକୁ ଶରଧାରେ ଖୁମ୍ପାଖୁମ୍ପି କଲା ।

"ପୁରସ୍କାର ତ ସମସ୍ତଙ୍କୁ ମିଳୁଛି, ପ୍ରକୃତ ଚେଲି ଭାଗ୍ୟରେ ଥିଲେ ମିଳେ । ଯାକୁ ନେବି, ଧୂଆଁଘରେ ପୋଷିବି ।" କାଳୁ କହିଲା ।

"ଚେଲି ନିଶା, ମାରାତ୍ମକ ନିଶା । ରସାତଳେ କଚାଡ଼ି ହେଇ ପଡ଼ିବୁ, ଉଠିପାରିବୁନି ।" ମୁଁ କାଳୁକୁ ଚେତେଇ ଦେଲି ।

"ଆଜ୍ଞା ମୋ ପେଟପାଟଣା କଥା ।" ଶୁଆ ମାଲିକ କହିଲେ, "ଆପଣଙ୍କ ଉପରେ ଶ୍ରୀଜଗନ୍ନାଥ କୃପା କରନ୍ତୁ । ଆପଣଙ୍କ ମନୋସ୍କାମନା ପୂରଣ ହେଉ ।"

କାଲୁ କହିଲା, "ମନୋସ୍କାମନା ପୂରଣ ହେବ ? କେବେ, କେବେ ?"

ଶୁଆ ବୋବେଇଲା, "କ୍ୱିବେ, କ୍ୱିବେ ?"

ଯ୍ୱା ଭିତରେ ତିନିବର୍ଷ ବିତିଗଲାଣି । ଦିନେ ଆମେ କଳ୍ପନା ପଟକୁ ଗୋଟେ କାମରେ ଯାଇଥିଲୁ । କାଲୁ କହିଲା, "ଗୃଲ୍, ଆମ ସାହିତ୍ୟ ଅନୁଷ୍ଠାନରେ ଟିକେ ପ୍ରଦକ୍ଷଣା ମାରିବା । ମୁହଁଟା ଦେଖେଇଥିଲେ ଠିକ୍ ସମୟରେ କାମରେ ଆସିବ ।"

ସେଇଠୁ ଆମେ ଯୋଉ ବିଶ୍ୱସ୍ତରୀୟ ଅନୁଷ୍ଠାନଟି ଅଛି ତା ପ୍ରାଙ୍ଗଣରେ ପଶିଲୁ ।

"କାଲୁ ରେ, ମୋର କାହିଁକି କୋହ ଉଠଉଛିରେ ।" ମୁଁ କହିଲି ।

"ବିଶୁ ମହାରଣାର ଶ୍ୱଶୁର ପୁଅ ହାତଗଢ଼ା କାରୁକାର୍ଯ୍ୟମୟ ୟେ ବିଶାଳ ଅଟ୍ଟାଳିକା ଦେଖିକି ତୋତେ ସେମିତି ଲାଗୁଥିବ । ନିଜକୁ ସମ୍ଭାଳେ, ଏତେ ଭାବପ୍ରବଣ ହେଲେ ଚଳିବ ?" କାଲୁ ମୋତେ ଆଶ୍ୱାସନା ଦେବା ଢ଼ଙ୍ଗରେ କହିଲା ।

"ମୁଁ ବାହାରେ ଠିଆ ହେଇଛି । ତୁ ପ୍ରଦକ୍ଷଣା ମାରିକି ଆ ।"

ମୁଁ କୋଣ ବରଗଛ ମୂଳେ ଠିଆହେଇ ଗୋଟେ ବିଡ଼ିରେ ନିଆଁ ଧରେଇଲି । ୟେ ଅନୁଷ୍ଠାନଟି ଯୋଉ ଲମ୍ବା ଚଉଡ଼ା ବିଭାଗ ଅଧୀନରେ କାମ କରେ, ସେ ବିଭାଗର କଥା କାହାକୁ ଅଛପା ? ଦିନ ଆଲୁଅରେ ବିଭାଗଟି ଗୋଳିପାଣିରେ କଙ୍କଡ଼ା ଭଳି ପ୍ରତିଭାତ, ଆଉ କଙ୍କଡ଼ାକୁ ଗୋଳିପାଣି ସୁହାଏ କଥାଟାକୁ ପୁନଃ ପୁନଃ ପ୍ରମାଣିତ କରିବାକୁ କି କଅଣ ବିଭାଗ ନିତିପ୍ରତିଦିନ ଅଭିନବ ଯୋଜନାମାନ ଘୋଷଣା କରୁଛି । ନିକଟରେ ଜଣେ ନାମୀ ଜ୍ୟୋତିର୍ବିଦ୍ ନିଜ ପରିଚୟ ଗୋପନ ରଖି ଭବିଷ୍ୟବାଣୀ କରିଛନ୍ତି ଯେ ଯଦି ଆଗାମୀ ଦିନମାନଙ୍କରେ ବିଭାଗର କାର୍ଯ୍ୟକ୍ରମ ଗୃଲିଲା ବେଳେ ମଞ୍ଚ ଉପରେ ତୁମୂଳ କାଣ୍ଡ ନ ହୁଏ, ସେ ଜ୍ୟୋତିଷ ବିଦ୍ୟା ଛାଡ଼ିଦେବେ ।

ପାଞ୍ଚ ମିନିଟ୍ ଭିତରେ କାଲୁ ଫେରିଆସିଲା ।

"ଶଳାଃ କାଉକୋଇଲି କେହି ନାହାନ୍ତି । ଜଗୁଆଳି କହିଲା ସମସ୍ତେ କୋଉ ଗୁରୁତ୍ୱପୂର୍ଣ୍ଣ ବୈଠକରେ ଡ୍ୟାସ୍ ମାରୁଛନ୍ତି । ଆଉ ଦିନେ ଆସିବା ।"

"ସାହିତ୍ୟ ନିଶା ଠିକ୍ ଅଛି, ତୋର ଯେ ପୁରସ୍କାର ନିଶାଟା ଦିନକୁ ଦିନ ବଢୁଛି କାହିଁକି ମୁଁ ଟିକେ ଶୁଣେ?" ମୁଁ ରାଜମହଲ ଟପିଲା ପରେ ପଚାରିଲି।

କାଳୁ ଗାଡ଼ି ଚଳଉଥିଲା। ହେଲମେଟ୍ ଭିତରୁ କହିଲା, "ତିନିବର୍ଷ ତଳେ ରଥଯାତ୍ରା ଦିନ ତୋ ଭାଉଜ ଆଉ ମୁଁ ଯାଇ ଭୂମିପୂଜା କରି ଆସିଥିଲୁ। ଘର ମିଅାଁ ଉଠେଇବି ଉଠେଇବି ବୋଲି ଆଜି ଯାଏଁ ହେଲାନି। ଦରମା ଗଣ୍ଡାକ ମାସକ ଅଧା ହବା ଆଗରୁ କୁଆଡ଼େ ଉଡ଼ିଯାଉଛି। ସବୁଦିନେ କଅଣ ଏଇ ଧୂଆଁଘର ବାଇକ୍ ଚଲଉଥିବି? ଗାରିଚକିଆଟେ କଲେ ସାଇପଡ଼ିଶା ବନ୍ଧୁବାନ୍ଧବରେ ଖାତିର ବଢ଼ିବ। ଦି ଦିଟା ଝିଅଙ୍କ ବାହାଘର ଉଠେଇବାକୁ ପଡ଼ିବ। ପୁରସ୍କାର ନ ମିଳିଲେ କୋମିଟୀ ଫୋମିଟୀରେ ନ ପଶିଲେ କେମିତି ସବୁ କରିବି?"

"କାଳୁ, ଲୁଚେଇକି ଯାଡୁସ୍ୟାଡୁ ଖାଉଛୁ କିରେ? ତୋ ଝିଅ ଦିଟା ତ ବକଟେ ବକଟେ। ଏକାବେଳେକେ ଏତେ ଦୂରକୁ ଭାବିଦଉଛୁ? କୋଉ ପୁରସ୍କାର ପାଇଲେ ତୁ ଘର, ଗାଡ଼ି, ଝିଅ ବାହାଘର ଉଠେଇବୁ? ଭାଇ, ସେସବୁ ମାୟାରେ ପଶନା। ସୃଜନ ମାୟା କଅଣ କମ୍ ମାୟା?"

"ତୁ ତ ଆଜିଯାଏ ବାହାସାହା ହେଲୁନୁ। କଳା ମୋର ହିଂସିକି ପ୍ରେୟସୀ ଘଷରା ଡାଇଲଗ୍ ମାରିମାରି ଖଣ୍ଡେ ଅଧେ ପ୍ରେମିକା ବି କଲୁନି। ତୋର ଯଦି ଏତେ ମନ ଗଲା ତୋତେ ତୀର୍ଥଯାତ୍ରୀ ଟ୍ରେନରେ ବସେଇ ଦେବି। ହିମାଳୟରେ ଦିଗମ୍ବର ଜଟାଧାରୀ ବାବା ହୋ। ଅତିନ୍ଦ୍ରୀୟ ଚେତନା, ସତ୍-ଚିତ୍-ଆନନ୍ଦ ଉପଲବ୍ଧି କର। କହିଲା କଣନା ସେସବୁ ମାୟାରେ ପଶନା! ତୋ ବୋଉ ପୁଅ ମୋର କଳାକାର ମୋ ଏକୋଇରବଳା କହିକି ପାଦ ଘଷି ଦଉଛନ୍ତି। ତୋ ବାପା ଭେଁନଶୋରରେ ନଂଘା ଜାଗାରେ ଦୋତାଲା କୋଠା ବାଡ଼େଇ ଦେଇଛନ୍ତି। ସେଥିଲାଗି ତୁ ଆଇଫୋନ ଧରି ଲିଭାଇସ ପିନ୍ଧି ମୋତେ ଡ୍ୟାସମରା ଦର୍ଶନ ଶୁଣଉଛୁ।"

"ଅତିନ୍ଦ୍ରୀୟ ଚେତନା ଉପଲବ୍ଧି ପାଇଁ ଧୂଆଁଘର ଅଛି, ସେତେ ଦୂର କାହିଁକି ଯିବି?" ମୁଁ କାଳୁ କାନ୍ଧରେ ହାତ ଥାପି କହିଲି।

"ସେୟା କହ। ଧୂଆଁଘର ଅଛି ବୋଲି ମୋତେ ମାଲପାଣି ଖର୍ଚ୍ଚ ପଡୁନି। ସାଙ୍ଗ ତୁ ଅଛୁ ବୋଲି ପେଟ୍ରୋଲ ଖର୍ଚ୍ଚ ବାଧୁନି। ବାହାଘର ଛଅବର୍ଷ ହେଲାଣି ତୋ ଭାଉଜକୁ ବୋମକେଇ ପାଟ ଖଣ୍ଡେ କିଣିକି ଦେଇପାରିଲିନି। ସିଏ ଲକ୍ଷ୍ମୀଟିଏ, ଦିନେ କିଛି ଅଭିଯୋଗ କରିନି..."

"କାଳୁ, କାଳୁ," ମୁଁ କଷ୍ଟରେ ଛଟଛଟ ହେଲା ପରିକା କହିଲି, "ମୋ

ହୃତପିଣ୍ଡଟା ଫାଟିକି ଗଜଗସ୍ତାରେ ଖଣ୍ଡଖଣ୍ଡ ହେଇ ପଡ଼ିଲାଣି...”

କାଲୁ ମୋ ପେଟକୁ କହୁଣୀଟେ ମାଇଲା – “ଏଇକ୍ଷିଣା ତୋ କଲିଜା ଛିଟିକି ପଡ଼ିବ ।”

ଆମେ ଧୂଆଁଘରେ ପହଞ୍ଚି ଟିଭିଟା ଚଲେଇ ଦେଲୁ । କାଲୁ ଗୋଟେ ସୋଫାରେ ଗଡ଼ିପଡ଼ିଲା, ମୁଁ ଆଉ ଗୋଟେ ସୋଫାରେ ଗଡ଼ିପଡ଼ିଲି ।

“ମୁଁ ଜାଣେ ମୁଁ ସଚି ରାଉତରା ନୁହଁ,” କାଲୁ ମୋତେ କହିଲା, “ତ କଅଣ ହେଲା ? ଡ୍ୟାସମରା ସବୁ ପୁରସ୍କାର ରୁଣ୍ଡେଇବେ, ମୁଁ କାହିଁକି ଚେଷ୍ଟା ନ କରିବି ? ମୁଁ ମନ୍ଦ ଲେଖୁନି ତା ତ ମାନିବୁ ?”

“ତୋର ଥାଇ ଥାଇ କି ଅଛି ଯାହା ଟିକେ ସୃଜନ ବଳ । ସେଇଥିରେ ମାତିଲେ ଯେତେ ଦୂର ଯିବୁ । ପୁରସ୍କାର ପାଇବୁନି କାହିଁକି ପାଇବୁ । ବ୍ୟସ୍ତ କାହିଁକି ହଉଛୁ? ଆମ ସାହିତ୍ୟରେ ସେଇଟା ହିଁ ତ ସମସ୍ୟା । ଲେଖାଟେ ପଢ଼ିଲେ ହିଁ ବାରି ହେଇପଡ଼ିବ ଗୋଟେ ତରତରିଆଭାବ, ଗୋଟେ ଅସ୍ଥିରତା... ଯେମିତି କାହାକୁ ଟପିଯିବାର ଇଚ୍ଛା, କୋଉଠି ଗୋଟେ ଯାଇ ଶୀଘ୍ର ପହଞ୍ଚିଯିବାର ତୀବ୍ର ଅଦମନୀୟ ଅଭିଳାଷ ।”

କାଲୁ ମୋ ଆଡ଼କୁ ଅନେଇ କଅଣ ଚିନ୍ତା କଲା ଭଳି ମନେ ହେଲା ।

“ଆଚ୍ଛା, ତା ହେଲେ ତୁ କହୁଛୁ ସେସବୁ ମାୟାରେ ପଡ଼ିବିନି ? ହେଲେ ଭାବିଲେ ତ ଭଲ ଲାଗୁଛି । ମୁଁ ପୁରସ୍କାର ପାଉଛି, ଫୁଲତୋଡ଼ା ଧରିଛି, ଫଟୁ ଉଠୁଛି, ତାଳିମାଡ଼ ହଉଛି... ଯେମିତି ଇସ୍କୁଲ ଆଉ କଲେଜ ଦିନରେ କବିତା ଆବୃତ୍ତି କରିକି ପୁରସ୍କାର ପାଉଥିଲି । ଛାତି କୁଣ୍ଡେମୋଟ ହଉଥିଲା ।”

“ମୋର କହିବା କଥା ମାୟାରେ ପଡ଼ନା । ଚେଷ୍ଟା କରିବାରେ ଅସୁବିଧା ନାହିଁ । ତୋଠୁଁ ଅନୁପ୍ରାଣିତ ହେଇ ମୁଁ ବି ଚେଷ୍ଟା ଚଲେଇବି ବୋଲି ଭାବୁଛି । ଆମ ବିଶ୍ୱସ୍ତରୀୟ ପୁରସ୍କାରଟା ପାଇଁ, ନା କଅଣ କହୁଛୁ ?”

“ହଁ, ହଁ, ମୋତେ ତ ନୂଆ ଉତ୍ସାହ ମିଳିବ,” କାଲୁ କହିଲା ।

“ଏଠି ବ୍ୟବସ୍ଥା କଅଣ ଅଛି ? ବନ୍ଧୁଗଣ, ମୁଁ ଖୋଲାଖୋଲି କହିଦଉଛି – ପାଣି, ପଙ୍କ ଓ ପଦ୍ମଙ୍କୁ ସମାନ ଭାବେ ଟିଟିକାରି ମାରିବା ପାଇଁ ଦିନେ ସନ୍ଧ୍ୟାବେଳେ ମୋ କାନରେ ଧୀରେ କହି ଦିଆଯାଉ – “ଆପଣ ପୁରସ୍କାର ପାଇଲେ” । ଆଉ ରାତାରାତି ମୋ ବ୍ୟାଙ୍କ ଖାତାରେ ଗୁପ୍ତ ଭାବେ କୋଟିଏ ଟଙ୍କା

ଜମା କରି ଦିଆଯାଉ । ତାହେଲେ ମୁଁ କାହାକୁ କିଛି ନ ଜଣାଇ ଆଜୀବନ ନୀରବଚ୍ଛିନ୍ନ ଟିଟିକାରି ସାଧନା କରିଚାଲିବି ।

"ହାଃ ହାଃ, କ୍ଲାସିକ୍! ରତିଏ କୋଟିଏ!"

"ଖବରଦାର୍, ମୂଲଚାଲ କଲେ ଆଉ କୋଟିଏ ବଢ଼େଇ ଦେବି ।"

"ତୁ ସିନା କହୁଥିଲୁ, ଯେ ପୁରସ୍କାରଟା ମିଳୁମିଳୁ ମୋ ଝିଅଙ୍କର କଅଣ ନାତିନାତୁଣୀଙ୍କ ବାହାଘର ହେଇଯାଇଥିବ! ଖାଲି ବଞ୍ଚିକି ରହିଲେ ହେଲା!" କାଳୁ ଏଥର ବାସ୍ତବତା ଉପଲବ୍ଧି କଲା ଭଳି କହିଲା ।

"ରହ, ମୋ ମୁଡ୍ ଖରାପ କରନା । ମୋତେ ଯେତେବେଳେ କୋଟିଏ ମିଳିବ, ମୁଁ ଗୋଟେ କଳା ଜାଗୁଆର କିଣିବି । କଳା ଜାଗୁଆର ଭିତରୁ କଳା ସାର୍ଟ୍ ଉପରେ କଳା ଜ୍ୟାକେଟ୍, କଳା ଜିନ୍ସ, କଳା ରେବ୍ୟାନ୍ ଚଷମା ପିନ୍ଧି ମୁଁ ଯେତେବେଳେ ବାହାରିବି, ମୋତେ ଲକ୍ଷ ଲକ୍ଷ ପାଠକ ପାଠିକା ଘେରିଯିବେ । ନେପଥ୍ୟେ ଗୀତ ବାଜିବ –

ଜରା ଦେଖୋ କୌନ ଆଗେୟା ହୈ
ଜମାନେ ମେଁ ଜୋ ଛା ଗୈୟା ହୈ
ଜମି ଜିସପେ ସବ୍ ନିଗାହେଁ
ଖୁଲି କିସ୍କି ଖାତିର୍ ହୈ ବାହେଁ
ଐସା ଦିଲଦାର୍ ଆୟା ହୈ କୌନ୍
ମୁଝକୋ ପେହଚାନ ଲୋ ମେଁ ହୁଁ ଡଅଅଅଅଅଅନ୍...

"କୋଉ ଦିନ ଆମ ରାଇଜରେ ଏମିତିକା ଦିନ ଆସିବ ରେ?" କାଳୁ ପଚାରିଲା ।

"ଯୋଉ ଦିନ ଆମ ମଣି ଭାଇ ଦେଓମାଳି ଯିବା ରାସ୍ତାରେ ଠିଆ ହେଇ ବହି ବିକିବେ!"

କାଳୁ ମୁଣ୍ଡ ହଲେଇଲା, "ଆଉ କହନା!"

ମୁଁ କହିଲି, "ମତେ କାଇଁ ଲାଗୁଛି ଯେ ରାଇଜରେ ଯିଏ ବହି କିଣେଇ ବିକେଇ ପାରିବ, ସେ ହିଁ ପରିବର୍ତ୍ତନ ଆଣିବ । ଭାବୁଛି ମୋ ଭିତରର କଳା କାଗଜ ଓ କାନଭାସରେ ବୋଳିଦେବା ପରେ ମୁଁ ବି କୋଉ ଗଛ ମୂଳେ ଠିଆ ହେଇ ବହି ବିକିବି — ବହି ନିଅ ବହି, ସଜ ବହି, ପୁରୁଣା ବହି, ସଚ୍ଚି ବହି,

କାଲୁ ବହି, ଅଗା ବହି, ବଗା ବହି, ମଞ୍ଜି ବହି, ବାଲୁଙ୍ଗା ବହି...”

“ଆଉ ବହି କଅଣ ବିକିବୁ ? ଆଜିକାଲି ସବୁ ଡ଼ିଜିଟାଲ । ଯାହା କହ ଯେ ସାମାଜିକ ମାଧମ, ହ୍ୱାଟ୍ସଆପ ହେଇ ପାଠକ ମିଳୁଛନ୍ତି । ସଚ୍ଚି ରାଉତରାୟର ପାଠକ ଅଛନ୍ତି, କାଲୁ ମିଶ୍ରର ବି ପାଠକ ଅଛନ୍ତି ।”

“ହଁ ଭାଇ, ସମସ୍ତଙ୍କର ପାଠକ ଅଛନ୍ତି ।” ମୁଁ କାଲୁ କଥାରେ ଏକମତ ହେଇ କହିଲି । ଟିକେ ରହି ତାକୁ ଚିଡ଼େଇବାକୁ କହିଲି, “ଆମ ସୁକନ୍ୟା ଦେବୀଙ୍କର ତ ଅସଂଖ୍ୟ ପାଠକ ଅଛନ୍ତି ।”

“ଓଃ, କି ନିଷ୍ଠୁର ତୁ ।” କାଲୁ ଟିଭି ଦେଖିବାରେ ମନ ଦେଲା ।

ବିରିଆନି ଖାଇସାରିବା ପରେ ମୋତେ ମାନ୍ଦା ଲାଗିଲା । ଏମିତିରେ କାଲି ରାତିରେ ଡ଼େରିରେ ଶୁଆ, ସକାଳୁ ଶୀଘ୍ର ଉଠା ହେଇଛି । ନନ୍ଦନକାନନ ଯିବାକୁ ମନ ହେଲାନି । ମୁଁ ଟିକେ ବିଶ୍ରାମ ନେଇ ନେଟଫ୍ଲିକ୍ସରେ ଗୋଟେ କ୍ରାଇମ୍ ଥ୍ରିଲର ଦେଖି ସନ୍ଧ୍ୟାବେଳକୁ ବୋଉ ପାଖକୁ ପଳେଇବି ବୋଲି ଧୂଆଁଘର ଖୋଲିଲି । ହେଲେ ଦଶ ମିନିଟ ଖଣ୍ଡେ ଯାଇଛି କି ନାହିଁ ନନ୍ଦନକାନନରୁ ଫୋନ ଆସିଲା ।

“କୁଆଡ଼େ ଖସି ପଳେଇଲ ହୋ ? ଏଠି ତୁମ ଟୀକା ଟିପ୍ପଣୀ ବିନା କର୍ମଶାଳା କେମିତି ସରିବ ? କେଳେଙ୍କାରୀ ହେଇଗଲାଣି!” ମୋହନ ବାବୁ କହିଲେ ।

“କଣ ହେଲା ?” ମୁଁ ଆଗ୍ରହରେ ପଚାରିଲି ।

“ଅନଙ୍ଗ ଗୁରୁ ପ୍ରବଚନ ଦେଉଥିଲେ । କିଛି ପିଲା ତାଙ୍କୁ ଘେରି ଗଲେ — ଆପଣ ତ ନିଜ ଗୋଷ୍ଠୀ ପାଇଁ ସବୁବେଳେ ପାତର ଅନ୍ତର କରନ୍ତି । ଖାଲି ଭାଷଣରେ ବଡ଼ ବଡ଼ କଥା କୁହନ୍ତି! ସେ ନିଲଠା କଥା ଗୁଡ଼ା ଆଉ କୋଉଠି ଯାଇ ଶୁଣେଇବେ ଇତ୍ୟାଦି ଇତ୍ୟାଦି । ସେ ଫଁ ଫଁ ଶଁ ଶଁ ହେଇ ପଡ଼ିଗଲା ଭଳି ହେଲେ । ବର୍ତ୍ତମାନ ତାଙ୍କୁ ସୁକନ୍ୟା ମାଡାମ୍ ପଙ୍ଖା କରୁଛନ୍ତି । ଆଉ ତାଙ୍କ ଚେଲା ଚାମୁଣ୍ଡା ତ ରକ୍ତମୁଖା । ନିନ୍ଦୁକ ଦଳ କହୁଛନ୍ତି ବୁଢ଼ା ଭେଳିକି ବାହାର କରୁଛି । ଅଥଚ ଯେ ଘଡ଼ିସନ୍ଧି ମୂହୁର୍ତ୍ତରେ ତୁମେ ନାହଁ!”

“ହେଇ ପହଞ୍ଚିଲି ।”

ମୋତେ ପୁଣି ଥରେ ଟିକଟ କାଟି ନନ୍ଦନକାନନ ଭିତରକୁ ପଶିବାକୁ ପଡ଼ିଲା । ମୁଁ ଆଉ ଏଣେ ତେଣେ ନ ବୁଲି ସିଧା ହ୍ରଦ ଆଡ଼କୁ ମୁହେଁଇଲି । ଦୂରରୁ ଦେଖି ସାନୁ ମୋ ପାଖକୁ ଦୌଡ଼ି ଆସିଲା, “କାକୁ, ଆପଣ କୁଆଡ଼େ ଯାଇଥିଲେ ?”

"ଟିକେ ଜରୁରୀ କାମ ଥିଲା ତ । ସାନୁ ଆମର ଚଢ଼େଇ ଦେଖିଲା?"

"ମୁଁ ବାଣୀ ଅପାଙ୍କ ସହ ବୁଲିକି ଚଢ଼େଇ ଦେଖିଲି । କେତେ ସୁନ୍ଦର!"

"ବାଃ, ବଢ଼ିଆ ।"

ମୁଁ ଲକ୍ଷ୍ୟ କଲି କିଛି ଲୋକ ଅନଙ୍ଗ ଗୁରୁଙ୍କୁ ବେଢ଼ିକି ବସିଥିଲେ । ଆଉ ଅନ୍ୟମାନେ ଦଳଦଳ ହେଇ ବୁଲୁଥିଲେ । ଟିକେ ଦୂରରେ ସାନୁର ବାପା ଗୋଟେ ଦଳକୁ ବୁଝାସୁଝା କଲା ଭଳିଆ କଅଣ କହୁଥିଲେ । ବାତାବରଣରେ ଗୋଟେ ଗୁପ୍ତ ଅସ୍ୱସ୍ତି ଅନୁଭବ କରିହେଉଥିଲା । ମୁଁ ମୋହନ ବାବୁଙ୍କ ପାଖକୁ ଗଲି । ସେ ହ୍ରଦ ସେପଟେ ଉଦ୍ଭିଦ ଉଦ୍ୟାନକୁ ଚାହିଁ କଅଣ ଭାବୁଥିଲେ । ମୋ ଉପରେ ଆଖି ପଡ଼ିଲାରୁ କହିଲେ, "କୁଆଡ଼େ ଉଭାନ ହେଇଯାଇଥିଲ? ନିରାମିଷ ଭୋଜନ ଚଳେନି ନା କଅଣ?"

"ଛାଡ଼ନ୍ତୁ ସେକଥା । କଅଣ ହେଲା କୁହନ୍ତୁ ।"

"କଅଣ ଆଉ ହେବ? ହ୍ରଦ କୂଳରେ ବସି କବିତା ପାଠ ପ୍ରସ୍ତାବ ହେଲା । ସୁଦୂର ବଲାଙ୍ଗିରରୁ ଆସିଥିବା କବି ପ୍ରହଲ୍ଲାଦ ଶତପଥୀ ନିଜ କବିତା ପଢ଼ିଲେ—
ମୁଁ ଗୋଟାଏ ଘରର ଚିତ୍ର ଆଂକିବାକୁ ଚାହୁଁଛି
ମୋର ଲୋଡ଼ା ରଂଗ, ତୂଳି
ନିବୁଜ୍ କୋଠରିର ଏକାକୀତ୍ୱ
କୂଅର ଗଭୀରତା
ରାତିଅଧର ଶୋଇ ପଡିଥିବା ଗଛ ଡାଳ ପତ୍ରର
ଚିରହରିତ୍ ନିଃଶ୍ୱାସ...
ମୁଁ ଆଂକୁଥିବା ଘରେ ସବୁକିଛି ଅଛି
ଖାଲି ଯାହା ଘରଟିଏ ନାହିଁ ।

ସେଇଥିରୁ ତ ଅନଙ୍ଗ ଗୁରୁଙ୍କ ବିରୋଧୀ ଦଳ ଉତ୍ପାତ ଆରମ୍ଭ କଲେ । ଯୋଉ ପାଟିତୁଣ୍ଡ କଅଣ କହିବି? ଆମର ଏଠି ସବୁ ଅଛି — ସଭା ଅଛି, ମଞ୍ଚ ଅଛି, ପୁରସ୍କାର ଅଛି, ଲମ୍ବା ଚଉଡ଼ା ଭାଷଣ ଅପର୍ଯ୍ୟାପ୍ତ । ସବୁକିଛି ଅଛି – ଖାଲି ଯାହା ସାହିତ୍ୟ ନାହିଁ । ଆଜି ଭଣ୍ଡାମି ଶେଷ ସୀମାରେ ପହଞ୍ଚିଛି । ଏଥିପାଇଁ ଦାୟୀ କିଏ? ଯିଏ ଉପେକ୍ଷିତ ସିଏ ଚିରକାଳ ଉପେକ୍ଷିତ । ଏମିତି ଲମ୍ବା ଅଭିଯୋଗ । କିଛି ଲୋକ ମୁହଁରେ ତାଲା ଦେଇ ବସିଲେ । କିଛି ଲୋକ ବୁଝାସୁଝା କରିକି ଉତ୍ତ୍ୟକ୍ତ ଦଳକୁ ଶାନ୍ତ କରିବାକୁ ଚେଷ୍ଟା କଲେ ।"

“ଆଚ୍ଛା!” ମୁଁ କହିଲି, “ତା ହେଲେ ଏମିତି କାଣ୍ଡ।”

ସେତିକି ବେଳେ ପୁଣି ପାଟିତୁଣ୍ଡ ଶୁଣାଗଲା । ଆମେ ସେପଟକୁ ଗଲୁ । ଦି ଦଳଙ୍କ ଭିତରେ ଗଣ୍ଡଗୋଳ ପୁଣି ଆରମ୍ଭ ହେଇଯାଇଥିଲା, ହାତାହାତି ହେବା ଉପରେ । କଥାବାର୍ତ୍ତା ଆଉ କୌଣସି ସମସ୍ୟା ନୁହେଁ ବରଂ ବ୍ୟକ୍ତିଗତ ସ୍ତରର ଆକ୍ଷେପକୁ ଚାଲିଆସିଥିଲା ।

ଏସବୁ ପାଟିତୁଣ୍ଡ, ଉଚ୍ଚବାଚ୍ଚ ଶୁଣି ସାନୁ କିଂକର୍ତ୍ତବ୍ୟବିମୂଢ଼ ହେଇ ଚାହିଁ ରହିଲା । ସେ ଗାଲରେ ହାତ ଦେଇ ଆଖି ବଡ଼ ବଡ଼ କରି କଅଣ ଭାବିଲା ।

“ମୁଁ ଏଠିକି କାହିଁକି ଆସୁଥିଲି ଯେ ?” ସାନୁ କାନ୍ଦୁଣୁମାନ୍ଦୁଣୁ ହେଇ କହିଲା ।

“କଅଣ ହେଲା ? ସାନୁକୁ କିଏ କିଛି କହିଲା ?” ମୁଁ ପଚାରିଲି ।

“ମୋତେ ଭଲଲାଗୁନି । ମୁଁ ଘରକୁ ଯିବି,” ସାନୁ କହିଲା ।

“ଏଠି ଆମେ ସମସ୍ତେ ଅଛୁ । ଆମକୁ ଛାଡ଼ି ସାନୁ ପଳେଇବ ? ବ୍ୟସ୍ତ କାହିଁକି ? ଯିବା ତ ।”

“ମୁଁ ଜାଣିନି । ମୁଁ ବାସ୍ ଯିବାକୁ ଚାହୁଁଛି ।” ଯା କହୁ କହୁ ସାନୁ ଆଖିରୁ ଦି ଟୋପା ଲୁହ ଗଡ଼ି ଆସିଲା ।



**କୁନୁ ବହି**

ବଳରାମ ଦାସକୃତ

## ଜଗମୋହନ ରାମାୟଣ

ଗଦ୍ୟ ରୂପାନ୍ତର

**ସୁପ୍ରିୟା ପ୍ରଶାନ୍ତ**

"ଜଗମୋହନ ରାମାୟଣ" ବଳରାମ ଦାସଙ୍କର ଶ୍ରେଷ୍ଠ କୃତି । ଏହା ବାଲ୍ମିକୀ ରାମାୟଣର ଆକ୍ଷରିକ ଅନୁବାଦ ନୁହେଁ; ରାମାୟଣର ମୂଳ କାହାଣୀ ଓ ସଂରଚନାକୁ ନ ବଦଳାଇ କବି ଏଥିରେ ନିଜସ୍ୱ ଦୃଷ୍ଟିଭଙ୍ଗୀ ଓ ନୂଆ ନୂଆ କାହାଣୀର ବର୍ଣ୍ଣନା କରିଛନ୍ତି । ତା ବ୍ୟତୀତ ସଂସ୍କୃତ ରାମାୟଣର ବହୁ ଉପାଖ୍ୟାନକୁ ସେ ପ୍ରସାରିତ କରି ନୂତନ ଦୃଷ୍ଟିକୋଣ ପ୍ରଦାନ କରିଛନ୍ତି । ଏଥିରେ ସବୁ ଶ୍ରେଣୀର ଓଡ଼ିଆ ପାଠକ ବୁଝିପାରୁଥିବା ସହଜ ଭାଷାରେ ଧର୍ମ ଜୀବନର ଗୂଢ଼ ଦର୍ଶନକୁ ବାଖ୍ୟା କରାଯାଇଥିବାରୁ ଏହା ସେମାନଙ୍କ ଭାବଧାରାକୁ ସମୃଦ୍ଧ କରିବାରେ ସମର୍ଥ ହୋଇଛି । ଏହି ଗ୍ରନ୍ଥରେ ଜ୍ଞାନଯୋଗ ଓ ଭକ୍ତିଯୋଗର ଅପୂର୍ବ ସମନ୍ୱୟ ପରିଲକ୍ଷିତ ହୁଏ । ଡକ୍ଟର କୃଷ୍ଣ ଚରଣ ସାହୁଙ୍କ ଦ୍ୱାରା ସମ୍ପାଦିତ "ଜଗମୋହନ ରାମାୟଣ"ର ଏହି ଗଦ୍ୟ ରୂପାନ୍ତର ମାଧ୍ୟମରେ ଷୋଡ଼ଶ ଶତାବ୍ଦୀରେ ବଳରାମ ଦାସଙ୍କ ରଚିତ ଓଡ଼ିଆ ଭାଷାର ଏହି ଅମୂଲ୍ୟ ଗ୍ରନ୍ଥଟିକୁ ବର୍ତ୍ତମାନର ପାଠକମାନଙ୍କ ନିକଟରେ ପହଞ୍ଚାଇବାର ବିନମ୍ର ପ୍ରଚେଷ୍ଟା କରାଯାଇଛି ।

କୁନୁ ବହି

# ସାରଳା ମହାଭାରତ

ଗଦ୍ୟ ରୂପାନ୍ତର

**ସୁପ୍ରିୟା ପ୍ରଶାନ୍ତ**

ଆଦିକବି ସାରଳା ଦାସଙ୍କ ରଚିତ ମହାଭାରତ ଓଡିଶାର ଶ୍ରେଷ୍ଠ ସାରସ୍ୱତ ସମ୍ପଦ । ଏହି ଗ୍ରନ୍ଥର ମୌଳିକତା, ଭାଷା ସମ୍ଭାର ତଥା ଦାର୍ଶନିକ ମୂଲ୍ୟବୋଧ ଓଡିଆ ଭାଷା ସାହିତ୍ୟର ଭିତ୍ତିଭୂମି ସ୍ଥାପନ କରିଥିଲା । ଏଥିରେ ବ୍ୟାସ ମହାଭାରତର ମୂଳ କଥାବସ୍ତୁ ଅକ୍ଷୁଣ୍ଣ ଥିଲେ ମଧ୍ଯ ସାରଳା ଦାସଙ୍କ ନିଜସ୍ୱ ଦୃଷ୍ଟିଭଙ୍ଗୀ, କାହାଣୀରେ ଭିନ୍ନତା ଓ ମୁଖ୍ୟଚରିତ୍ରମାନଙ୍କ ବ୍ୟକ୍ତିତ୍ୱରେ ଅନେକ ପାର୍ଥକ୍ୟ ଦେଖିବାକୁ ମିଳେ । ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ଏବଂ ଓଡିଶା ସରକାରଙ୍କ ସଂସ୍କୃତି ବିଭାଗ ଦ୍ୱାରା ୧୯୬୫ ମସିହାରୁ ୧୯୭୩ ମସିହା ମଧ୍ଯରେ ପ୍ରକାଶିତ ସାରଳା ମହାଭାରତର ପ୍ରଥମ ସଂସ୍କରଣ ଅନୁସରଣରେ ପଞ୍ଚଦଶ ଶତାବ୍ଦୀରେ ସାରଳା ଦାସଙ୍କ ରଚିତ ମହାଭାରତକୁ ଏହି ଗଦ୍ୟ ରୂପାନ୍ତର ମାଧ୍ୟମରେ ସମକାଳର ପାଠକମାନଙ୍କ ନିକଟରେ ପହଞ୍ଚାଇବାର ସଶ୍ରଦ୍ଧ ପ୍ରଚେଷ୍ଟା କରାଯାଇଛି ।

**କୁନୁ ବହି**

## କୁହୁକ ବେଳା

(ଉପନ୍ୟାସ)

**ସୁପ୍ରିୟା ପ୍ରଶାନ୍ତ**

ସୁପ୍ରିୟା ପ୍ରଶାନ୍ତଙ୍କ ଲିଖିତ ପ୍ରଥମ ଉପନ୍ୟାସ "କୁହୁକ ବେଳା"ରେ ରହିଛି ଜଣେ ଛୋଟ ଝିଅର ଆଖିରେ ତା ଗୃରିପାଖର ପୃଥିବୀକୁ ଦେଖିବାର ଓ ବୁଝିବାର ଚେଷ୍ଟା । କଳ୍ପନା ଓ ବାସ୍ତବତାରେ ଫେଣ୍ଟାଫେଣ୍ଟି ପିଲାଦିନ, ବାଲିଖେଳ, କଣ୍ଢେଇ ବାହାଘର, ଲମ୍ବା ଖରାଛୁଟିର ବର୍ଣ୍ଣନା ପାଠକକୁ ନେଇଯାଏ ଗୋଟେ କୁହୁକମୟ ଜଗତକୁ...

କେନାଲ ବନ୍ଧ ତଳକୁ ଗଡ଼ିଗଲେ ନାଲିଗୋଡି ରାସ୍ତା, ଦିକଡ଼ରେ ଧାନବିଲ । ଦିଟା ବର ଓସ୍ତ ଗଛ ଛନ୍ଦାଛନ୍ଦି ହୋଇ ଠିଆ ହେଇଛନ୍ତି ମୋଡ଼ରେ । ଅଦୂରରେ ବାଉଁଶବଣ । ପାଦଚଲା ରାସ୍ତାଟିଏ ଭିତରକୁ ଯାଇଛି, ସେଠି ମୋ ଆଈଘର । ଆଈ କୁହେ ଯୋଉଦିନ ଅଜାଙ୍କ ସହ ତା ବାହାଘର ହେଇଥିଲା, ସେଦିନ ଏଇ ବର ଓସ୍ତ ଗଛ ଦିହିଁଙ୍କର ବିବାହ ଭେଜିଭାତ ଜାକଜମକରେ ହେଇଥିଲା । ସେ ନିଜେ ଦେଖିନି, ତା ଶାଶୁଠୁଁ ଶୁଣିଛି, କେତେ ବାଟଚଲା ଗଲାଆଇଲା ଲୋକେ ବର ଓସ୍ତଙ୍କ ବିବାହରେ ଆନନ୍ଦ କରିଥିଲେ ।

ଏଇ ଦମ୍ପତି ଗଛରେ ବୁଢୀ ଅସୁରୁଣୀ ରୁହେ । ଆଈ ହାତ ପଙ୍ଖା ବୁଲେଇ ବୁଲେଇ କୁହେ — ରାତି ଘଡ଼ିଏ ହେଲେ ବୁଢୀ ଅସୁରୁଣୀ ଗଛରୁ ଓହ୍ଲାଏ । ଗାଁ ଭିତରକୁ ଆସେ ।

ମୁଁ ମୋ ଆଈ କୋଳରେ ଜାକିହୋଇପାଏ ।

**କୁନୁ ବହି**

# ଅସମାପ୍ତ

(ଉପନ୍ୟାସ)

**ସୁପ୍ରିୟା ପ୍ରଶାନ୍ତ**

ଭଲପାଇ ହଜାଇବା, ହଜାଇ ଖୋଜିବାର କାହାଣୀ, ଜଣେ ଗାୟକର ଜୀବନ, ସଂଗୀତ ସାଧନା, ପ୍ରେମ, ବନ୍ଧୁତାକୁ ନେଇ କାହାଣୀ... ଜୀବନର ଦୁଃଖଦ ଓ ନିରାଶାମୟ ମୁହୂର୍ତ୍ତରେ ଚିର ସାଥି ସଙ୍ଗୀତର କାହାଣୀ...

"ମୁଁ ଭାବୁଥିଲି ଜୀବନରେ ଭଲପାଇବା ମିଳିବା ଏତେ ସହଜ ନୁହେଁ । ହୁଏତ ନିଜର ପ୍ରତିଭା ପାଇଁ ପ୍ରଶଂସା ବା ଈର୍ଷା ମିଳିବା ସହଜ, କିନ୍ତୁ ଭଲପାଇବା ?"

"ଏଇଟା ଗୋଟେ କଥା!" ଶ୍ରୀ ଆଶ୍ଚର୍ଯ୍ୟ ହେଇ କହିଲା, "ମୋତେ ଲାଗେ ତୁମେ ଯେମିତି ନିଜ ଚାରିପଟେ ଅଦୃଶ୍ୟ ବାଡ ସବୁ ଦେଇଛ । ତା ଭିତରକୁ କାହାକୁ ଯିବାକୁ ଅନୁମତି ନାହିଁ । କେଜାଣି, ହୁଏତ ମୁଁ ତୁମକୁ ବୁଝିବାରେ ଭୁଲ୍ କରୁଛି । କିନ୍ତୁ ମୋତେ ତୁମେ ସେମିତି ହିଁ ମନେ ହୁଅ ।"

ମୁଁ କାହା ମନରେ କାହିଁକି ଭଲପାଇବା ଜନ୍ମେଇ ପାରିବି, ସେ ବିଶ୍ୱାସ ମୋର ନଥିଲା । ଏମିତି ଯେତେ ଗୁଡିଏ ସଂପର୍କ, ସେସବୁକୁ ନେଇ ମୁଁ ଗମ୍ଭୀର ନଥିଲି । ଶ୍ରୀ ସହ ଦେଖା ହେବା ଯେମିତି ନୂଆ ଗୋଟେ ଅନୁଭବ ଥିଲା । ଆଉ ତା ପାଖରେ ମୁଁ ଉନ୍ମୁକ୍ତ ଅନୁଭବ କଲି । ମୁଁ ଯେ ତାକୁ ଭଲପାଇ ବସିଲି, ସେକଥା ଭାବି ମୁଁ ବି ଆଶ୍ଚର୍ଯ୍ୟ ହେଇଯାଉଥିଲି ।

## କୁନୁ ବହି

# ଆତ୍ମମଗ୍ନା

(ଓଡିଆ ନାରୀ ଆତ୍ମଜୀବନୀ, ଉଦ୍ଧୃତାଂଶ, ଆଲୋଚନା)

ସମ୍ପାଦନା ଓ ଭୂମିକା

**ସୁପ୍ରିୟା ପ୍ରଶାନ୍ତ**

ଏହି ବହିରେ ରହିଛି ସୀତାଦେବୀ ଖାଡ଼ାଙ୍ଗାଙ୍କଠୁଁ ଆରମ୍ଭ କରି ସଂଘମିତ୍ରା ମିଶ୍ରଙ୍କ ପର୍ଯ୍ୟନ୍ତ ପଚିଶଟି ଓଡ଼ିଆ ନାରୀ ଆତ୍ମଜୀବନୀ ଓ ସ୍ମୃତିକଥାରୁ ଉଦ୍ଧୃତାଂଶ ଓ ଆଲୋଚନା । ଏହା ବ୍ୟତୀତ ଅଛି ଊନବିଂଶ ଶତାବ୍ଦୀରେ ଓଡ଼ିଶାରେ ନାରୀ ଶିକ୍ଷାର ବିସ୍ତାର ଓ ବିଂଶ ଶତାବ୍ଦୀରେ ସେମାନଙ୍କର ସର୍ଜନାତ୍ମକ ପରିପ୍ରକାଶର ବିସ୍ତୃତ ସାମାଜିକ ଇତିହାସର ଆଲୋଚନା । "ଆତ୍ମମଗ୍ନା" ଓଡ଼ିଆ ସାହିତ୍ୟର ଅଦ୍ୟାବଧି ଅନାଲୋଚିତ ଦିଗ ଉପରେ ଏକ ଗବେଷଣା ଗ୍ରନ୍ଥ ।

ସୁ...

ବିଫଳ ପ୍ରକାଶକ

କାମଚଳା ସଂପାଦକ

ଅଧମ ଅନୁବାଦକ

ଖିଆଲି ସାହିତ୍ୟିକ

ମଗ୍ନ ଚିତ୍ରକର

ଏବଂ ନାଘର ଅଭିଭାବକ

କୁନୁ




₹ 300.00